# FOLK TALES OF
# ORISSA
# କଥାଲହରୀ

ବା

## ଉତ୍କଳକାହାଣୀ ସଂଗ୍ରହ ।

---

ଶ୍ରୀ ରାଘବାନନ୍ଦ ଦାସ ବି, ଏ, ଙ୍କ ଦ୍ୱାରା ପ୍ରକାଶିତ ।

---

ଷଷ୍ଠ ସଂସ୍କରଣ ।

Priuted by H. M. Dutta,
at the Dutta Press,
Cuttack,
1927

ମୂଲ୍ୟ ୵ ମାତ୍ର ।

# ଭୂମିକା ।



ଏତେଦିନରେ ଅବହମାନକାଳ ଉତ୍କଳର ପୁରନ୍ଧ୍ରୀମାନଙ୍କର ମୁଖେ ମୁଖେ ଭ୍ରାମ୍ୟମାଣ, ବାଳକବାଳିକା ସମ୍ପ୍ରଦାୟର ଚିତ୍ତ-ରଞ୍ଜନ, ଚିରକୌତୁକମୟ, ଅଦ୍ଭୁତ ମଧୁର କରୁଣ ହାସ୍ୟାଦି ରସ-ବିକାଶରେ ନିତ୍ୟ ସରସ, ଓଡ଼ିଆମାନଙ୍କର କାହାଣୀ ସାହିତ୍ୟକୁ ଲିପିଶିଳ୍ପର ଅଙ୍ଗୀଭୂତ କରି ପ୍ରକାଶ କରିବାର ଉପକ୍ରମ ହେଲା । ଜଣେ କୃତବିଦ୍ୟ ଯୁବକ ଅଳ୍ପଦିନ ହେଲା 'ଉତ୍କଳର କାହାଣୀ' ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ପ୍ରକାଶ କରିଅଛନ୍ତି । ଏବେ ପୁଣି ଜଣେ କରଣ ମହିଳାଙ୍କର ଲିଖିତ 'କଥାଲହରୀ' ବା ଉତ୍କଳ କାହାଣୀ ସଂଗ୍ରହର ପ୍ରଥମଭାଗ ପ୍ରକାଶିତ ହେଲା । ପ୍ରକାଶକ ମହାଶୟ ମୋତେ ଶଂସିତ ମହିଳାଙ୍କର ହସ୍ତଲିଖିତ ଅନେକ ଗୁଡ଼ିଏ କାହାଣୀର ପାଣ୍ଡୁଲେଖ୍ୟ ଦେଖିବାକୁ ଦେଇଥିଲେ । ମୁଁ ଲେଖିକାଙ୍କର ଅକୃତ୍ରିମ ଲିପିମାଧୁର୍ଯ୍ୟ ଉପଲବ୍ଧି କରି ପ୍ରକାଶକ ମହାଶୟଙ୍କର ତାହା ପ୍ରକାଶ କରିବାର ଇଚ୍ଛାକୁ ସମର୍ଥନ କରିଥିଲି । ବର୍ତ୍ତମାନ ସେଥିର ପ୍ରଥମ ଖଣ୍ଡ ମୁଦ୍ରିତ ହେବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛି । ପ୍ରକାଶକ ମହାଶୟ ପୁସ୍ତକକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ଯଥାସାଧ୍ୟ ଯତ୍ନ କରିଅଛନ୍ତି ।

ବର୍ତ୍ତମାନ ଓଡ଼ିଆରେ ଯେଉଁ ଗଦ୍ୟ ରଚନା ପ୍ରଣାଳୀ ଦେଖାଯାଏ ତାହା ନିତାନ୍ତ ଆଧୁନିକ ଏବଂ ବୈଦେଶିକ ସାହିତ୍ୟର ପ୍ରଭାବ ଯୋଗୁଁ ବହୁପରିମାଣରେ କୃତ୍ରିମଭାବାପନ୍ନ, କିନ୍ତୁ ଏହି କାହାଣୀମାନଙ୍କରେ ଯେଉଁ ଭାଷାଭଙ୍ଗୀ ବା ବାକ୍ୟରଚନା ପ୍ରଣାଳୀ

ଲକ୍ଷିତ ହେବ, ତାହା ଚିରରକ୍ଷଣଶୀଳା ନାରୀମାନଙ୍କର ମୁଖନିଃସୃତ ଉତ୍କଳ ଭାଷାର ସ୍ୱାଭାବିକ ଶ୍ରୀ । ତାହାର ଅଯତ୍ନମୂଳକ ଅକୃତ୍ରିମ ସୂକ୍ତ ମାଧୁର୍ଯ୍ୟର ମୋହିନୀ ଶକ୍ତି, କେତେକ ପଣ୍ଡିତମ୍ମନ୍ୟ ଉତ୍କଟ ରୁଚିଗ୍ରସ୍ତ ଲୋକଙ୍କ ଛଡ଼ା, ଅନ୍ୟ କିଏ ଅସ୍ୱୀକାର କରିବ ?

କେବଳ ଶିଶୁମାନଙ୍କ ଚିତ୍ତରଞ୍ଜନାର୍ଥ କାହାଣୀଗୁଡ଼ିକ ପ୍ରକାଶିତ ହୋଇଥିଲେହେଁ, ତାହା ବୟସ୍କମାନଙ୍କର ଅବଜ୍ଞେୟ ବା ଉପେକ୍ଷଣୀୟ ନୁହେଁ । ତତ୍ତ୍ୱାନୁସନ୍ଧାୟୀମାନେ ସେଥିର ଭାଷା ମଧ୍ୟରୁ ଉତ୍କଳ ଭାଷାସମ୍ବନ୍ଧୀୟ ତତ୍ତ୍ୱ, ସେଥିରେ ବର୍ଣ୍ଣିତ ଘଟଣାମାନଙ୍କରୁ ପ୍ରାଚୀନ ରୀତିନୀତି-ବିଶ୍ୱାସ-ବିଷୟକ ତଥ୍ୟ ଏବଂ ଅନ୍ୟ ନାନାବିଧ ସତ୍ୟ ମଧ୍ୟ ଆବିଷ୍କାର କରିପାରନ୍ତି । ଏହି ଗ୍ରାମ୍ୟ ଗଳ୍ପ ସାହିତ୍ୟସଙ୍ଗରେ ଅପର ଦେଶରେ ଅନ୍ୟ ଭାଷାରେ ପ୍ରଚଳିତ ଗଳ୍ପ-ସାହିତ୍ୟର ତୁଳନା କରି ସୌସାଦୃଶ୍ୟ ଓ ବୈଷାଦୃଶ୍ୟର ହେତୁ ନିର୍ଦ୍ଦେଶ-ପୂର୍ବକ ନାନା ପ୍ରତ୍ନତତ୍ତ୍ୱ ମଧ୍ୟ ଆବିଷ୍କୃତ ହୋଇପାରେ । ଏପରି ଅବସ୍ଥାରେ ଯେଉଁମାନେ ପ୍ରାଚୀନ ଗ୍ରାମ୍ୟ ସାହିତ୍ୟକୁ ଅବିକୃତ ଭାବରେ ସଂରକ୍ଷଣ କରିବାକୁ ଯତ୍ନ କରୁଅଛନ୍ତି ସେମାନେ ସର୍ବତୋଭାବରେ ପ୍ରଶଂସାର୍ହ । ମୋର ସମ୍ପୂର୍ଣ୍ଣ ଆଶା ଯେ ପ୍ରକାଶକ ମହାଶୟଙ୍କର ପ୍ରୟାସ ସର୍ବତୋଭାବେ ସଫଳ ହେବ ।

ଶ୍ରୀ ମଧୁସୂଦନ ରାଓ ।

# ବିଜ୍ଞାପନ ।

ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡିକରେ ଉତ୍କଳଦେଶୀ ଅସଂଖ୍ୟ ବାଳକ ବାଳିକା ଗଳ୍ପମଧ୍ୟରୁ କେତେଗୋଟି ପ୍ରକାଶ କରିବାକୁ ପ୍ରୟାସୀ ହେଲୁଁ । ଏହି କାହାଣୀଗୁଡ଼ିକ ଅନେକ କରଣମହିଳା ଦ୍ୱାରା ବର୍ଣ୍ଣିତ ଓ ଲିଖିତ ଏହିପରି କେତେଗୁଡ଼ିଏ କାହାଣୀ ସଂଗ୍ରହ କରି ପୁସ୍ତକା-କାରରେ ପ୍ରକାଶ କରିବାକୁ ଆମ୍ଭେ ବହୁବର୍ଷହେଲା ହୃଦୟରେ ଇଚ୍ଛା ପୋଷଣ କରିଥିଲୁଁ, ମାତ୍ର ସୁବିଧା ଅଭାବରୁ ସେ ବାସନା ଆଜି ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇ ପାରି ନ ଥିଲା । ବର୍ଣ୍ଣନାର ଲାଳିତ୍ୟ ଓ ଭାଷାର ମାଧୁର୍ଯ୍ୟରକ୍ଷା ନିମିତ୍ତ କାହାଣୀଗୁଡ଼ିକ ଯଥାସମ୍ଭବ ଲେଖିକାଙ୍କ ନିଜଭାଷାରେ ପ୍ରକାଶିତ ହୋଇଅଛି, କେବଳ ଅର୍ଥଗ୍ରହଣର ସୌକର୍ଯ୍ୟାର୍ଥ ଛେଦଚିହ୍ନନ୍ୟାସ ଓ ଅତ୍ୟଳ୍ପସ୍ଥାନରେ ଭାଷାପରିବର୍ତ୍ତନ ଆମ୍ଭଦ୍ୱାରା ହୋଇଅଛି । ଏହି ସଂଶୋଧନ କାର୍ଯ୍ୟରେ ଆମ୍ଭେ କଟକ ଟ୍ରେନିଙ୍ଗସ୍କୁଲର ହେଡ୍‌ମାଷ୍ଟର ମାନନୀୟ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କଠାରୁ ପ୍ରଭୂତ ସାହାଯ୍ୟ ପାଇଅଛୁ । ଏଥିନିମନ୍ତେ ତାଙ୍କଠାରେ ଆମ୍ଭେ ବିଶେଷ ଋଣୀ । ଉକ୍ତ ମହାଶୟ ମଧ୍ୟ କାହାଣୀଗୁଡ଼ିକ ଆଦ୍ୟୋପାନ୍ତ ପାଠ କରି ପୁସ୍ତିକାନ୍ତର୍ଗତ ଭୂମିକାଟି ଲେଖିଦେଇ ଆମ୍ଭଙ୍କୁ ବିଶେଷ ଉତ୍ସାହିତ କରିଅଛନ୍ତି । ଆମ୍ଭେ ଏଥିନିମନ୍ତେ ତାହାଙ୍କଠାରେ ଚିରକୃତଜ୍ଞତା ପାଶରେ ବଦ୍ଧ । ପରିଶେଷରେ ସାଧାରଣଙ୍କୁ ବକ୍ତବ୍ୟ ଏହି ଯେ ଏହି କାହାଣୀ ପୁସ୍ତିକାଖଣ୍ଡି ସେମାନଙ୍କର ଦୃଷ୍ଟିରେ ପଠନଯୋଗ୍ୟ ବିବେଚିତ ହେଲେ, ଆମ୍ଭର ଶ୍ରମ ସଫଳ ହୋଇଅଛି ବୋଲି ଜ୍ଞାନ କରିବୁଁ ।

କଲେଜଗଳି, କଟକ ।
୧୦।୧୦।୧୯୦୧ } ପ୍ରକାଶକ ।

# ଷଷ୍ଠ ସଂସ୍କରଣର ବିଜ୍ଞାପନ ।



ପଞ୍ଚମ ସଂସ୍କରଣର କପିଗୁଡ଼ିକ ନିଃଶେଷିତ ହୋଇଯାଇଥିବାରୁ ଷଷ୍ଠ ସଂସ୍କରଣ ପ୍ରକାଶିତ ହେଲା । ଲିପି ଦୋଷଗୁଡ଼ିକ ସଂଶୋଧିତ କରାଯାଇଅଛି । ପୁସ୍ତିକାଖଣ୍ଡି ପୂର୍ବବତ୍ ଆଦର ପାଇଲେ ଲେଖିକା ପ୍ରକାଶକ ଆନନ୍ଦିତ ହେବେ । ଇତି ।

ତା ୯ ରିଖ ଜୁଲାଇ ୧୯୨୭ ମସିହା ।

ପ୍ରକାଶକ ।



# ସୂଚିପତ୍ର ।




| ବିଷୟ | ପୃଷ୍ଠା |
|---|---|
| ଭୂମିକା | |
| କଥାର କଥା | ୧ |
| ସାଧବଘରବୋହୂ କଥା | ୨ |
| ଶ୍ୱେତବସନ୍ତ କଥା | ୬ |
| ଚମ୍ପାଗୈରୀ ଦାସୀର କଥା | ୯ |
| କାଠଖମ୍ବ କଥା | ୧୧ |
| ମଣ୍ଡାଗଛ ବା ଗଉଡ଼ପୁଅ କଥା | ୧୫ |
| ଡ଼ାଳମ୍ବକୁମର କଥା | ୧୮ |
| କଲ୍ଲୁଣ୍ଟିବେଣ୍ଟ କଥା | ୨୫ |
| ଅଜଗରସାପ କଥା | ୨୮ |
| ନେଉଳଭାଇ କଥା | ୩୨ |
| ଅନନ୍ତା କଥା | ୩୯ |
| କଞ୍ଚନବତୀ କଥା | ୪୧ |
| ଠକମକପାଣି ଚଲନ୍ତବାଜା କଥା | ୪୪ |
| ପକ୍ଷିରାଜଘୋଡ଼ା କଥା | ୪୯ |
| ଢଳାଢଳକୁମର ବା ଶଶିସେନା ଅଭିମନ୍ୟୁ କଥା | ୫୯ |
| ଉଜ୍ଜ୍ୱଳବତୀକନ୍ୟାର କଥା | ୬୮ |
| ମଉନାବତୀ କଥା | ୭୪ |
| ସୁନାଫୁଲ କଥା | ୮୨ |
| ପାନପୋଷ୍ଟି କଥା | ୮୬ |

| | |
|---|---|
| କଳାଗଜକ କଥା | ୯୨ |
| ବାବାଜୀ କଥା | ୧୦୩ |
| ଚମାରୁଣି ଝିଅ କଥା | ୧୦୬ |
| ସାଧବ ବୋହୂ ଲୀଳାବତୀର କଥା | ୧୧୨ |
| ଅଁଳାକଣ୍ଢେର କଥା | ୧୧୬ |
| ବୁଦ୍ଧିମତୀ ସାଧବ ଝିଅର କଥା | ୧୧୯ |




# ଉତ୍କଳ କାହାଣୀ ସଂଗ୍ରହ ।

## ପ୍ରଥମ ଭାଗ ।

### କଥାର ଲଥା ।

କଥାଟିଏ କହୁଁ   କଥାଟିଏ କହୁ ।
କିସ୍ କଥା ?   ବେଙ୍ଗୁଲି କଥା ।
କିସ୍ ବେଙ୍ଗୁଲି ?   କାଠ ବେଙ୍ଗୁଲି ।
କିସ୍ କାଠ ?   ତେଲ ମାଠ ।
କିସ୍ ତେଲ ?   ଘଣା ପେଲ ।
କିସ୍ ଘଣା ?   ଅଣ୍ଟୁ ଘଣା ।
କିସ୍ ଅଣ୍ଟୁ ?   କନ୍ୟାର ଅଣ୍ଟୁ ।
କିସ୍ କନ୍ୟାର ?   ବୁଢୀ ମନୁଷୀ ।
କିସ୍ ବୁଢ଼ୀ ?   ଶୁକଲ ବୁଢ଼ୀ ।
କିସ୍ ଶୁକଲ ?   ହାତୀ ଶୁକଲ ।
କିସ୍ ହାତୀ ?   ରଜାଙ୍କ ହାତୀ ।
କିସ୍ ରଜା ?   ଖଣ୍ଡ ରଜା ।
କିସ୍ ଖଣ୍ଡ ?   ମିରଗ ଲଣ୍ଡ ।
କିସ୍ ମିରଗ ?   ଝାଡ଼ ମିରଗ ।
କିସ୍ ଝାଡ ?   କଣ୍ଠା ଝାଡ ।
କିସ୍ କଣ୍ଠା ?   କାନକୋଳି କଣ୍ଠା ।
ଯହିଁ ଲାଗିଥାଏ ଝିଟାପଟା । *

---

* କଥାଟିଏ କହିବା ପୂର୍ବରୁ ଶ୍ରୋତାମାନଙ୍କ ଚିତ୍ତରଞ୍ଜନର ଉଦ୍ଦେଶରେ ଗାଉଁଲିଆମାନେ ଏହି ଅର୍ଥହୀନ ବାକ୍ୟ ଗୁଡ଼ିକ କହିଥାନ୍ତି ।



## ସାଧବଘର ବୋହୂ କଥା ।

ଗୋଟିଏ ସାଧବଟିଏ ଯେ ତାର ସାତ ପୁଅ ସାତ ବୋହୂ । ସବା ସାନ ବୋହୂଟିକି କେହି ଦେଖି ପାରନ୍ତି ନାହିଁ । ଏକା ସ୍ୱାମୀଟି ଭଲ ଦେଖିପାରେ । ସମସ୍ତେ ସକାଳୁ ଡାଧୋଇ ପାଧୋଇ ଆସନ୍ତି, ସାନ ବୋହୂଟୀ ଅବେଳ ପହରେ ଗାଧୋଇ ଯାଏ । ଗାଧୋଇ ଆସେ, ସେଠାରେ ଠାକୁର ଥାଆନ୍ତି ନଈପାଖେ, ସାନବୋହୂ ତାଙ୍କଠାରେ ଦଣ୍ଡବତ କରେ, କହେ ଶଶୁର ହୋଇବେ ଗାଁ ରାଜନ ଲୋ ଶାଶୁ ହୋଇଥିବେ ରାଣୀ, ଛ ଦେଢ଼ଶୁର ଛ ସାଆନ୍ତ ଲୋ ଛ ଯାଆ ସାଆନ୍ତାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ । ପୁଅ ହେଇଥିବ ରାଜକୁମର ଲୋ, ପୋଥି ଧରି ଗୀତ ଗାଇବ; ଦ୍ୱାରେ ଲଗାଇବି ସୁନାଟେଭା ଗଛ ନଗୀ ଧରି ଫୁଲ ତୋଳିବ । ହଅ ହୋଇବ ? ହଅଁ କହନ୍ତି ହଁ ହୋଇବ । ଏପରି ସବୁଦିନେ କହେ, ହଅଁ କହନ୍ତି ହଁ ହୋଇବ । ହଳକର ଛ ଯା ଯାଙ୍କ ଶୁଣିଲେ, ଯାଇକରି ମିଛରେ ଶାଶୁ ଆଗରେ କହିଲେ, ସାନ୍ତାଣି ଶୁଣିଲଣି ତମ ସାନବୋହୂ କଣ କହୁଛି । ଶାଶୁ କହିଲା କଣ କହୁଛି ? କହୁଛି, ଛ ଦେଢ଼ଶୁର ଛ ମୂଲିଆ ଲୋ ଛ ଯାଆ ମୂଲିଆଣି ଶଶୁର ହୋଇବେ ଗାଁର ମଳକ, ଶାଶୁ ହେବେ ମଳକାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ, ପୁଅ ହେଇଥିବ ରାଜକୁମର ଲୋ ପୋଥି ଧରି ଗୀତ ଗାଇବ, ଦ୍ୱାରେ ଲଗାଇବି ସୁନା ଟେଭାଗଛ ନଗୀ ଧରି ଫୁଲ ତୋଳିବ । ସେ ପଶ୍ଚରେ ହଅଁ ହୋଇବ ? ସେ ଦିଅଁଠା କହେ ହଁ ହୋଇବ । ଶାଶୁ ଶଶୁର

ସମସ୍ତେ କହନ୍ତେ ସାନ ବୋହୂକୁ ଘରୁ ତଡ଼ିଦିଅ । ତା ସ୍ୱାମୀ ଆଗରେ କହନ୍ତେ । ସ୍ୱାମୀ କହନ୍ତି ହିଁ ତଡ଼ିଦେବ ଯେ, ରହିଥାଅ ବୁଝିବା, ଶୁଣିବା ଲୁଚାକରି ସେ କଣ କହୁଛି, ତେବେ ଯାଇଁ ତଡ଼ିଦେବ, ବୃଥାରେ କାହିଁକି ଯେମନ୍ତ ହେଉଛ ? ସମସ୍ତେ ଶୁନଛାନ ହୋଇ ରହିଲେ । ତହିଁ ଆରଦିନ ସାନବୋହୂ ଗାଧୋଇ ଗଲାବେଳେ ଶାଶୁ, ଝିଅ ଯା, ସ୍ୱାମୀ ବର ଲୁଚିକରି ରହିଲେ । ଏ ଗାଧୋଇ ଆସି ଠାକୁରଙ୍କଠାରେ ଦଣ୍ଡବତ କଲା ବେଳେ କହିଲା, ଈଶ୍ୱର ହୋଇଲେ ଗାଁ ଗଜନ ଚୋ, ଏହିପରି ସବୁଦିନେ ଯେମନ୍ତ କହେ ସେମନ୍ତ କହିଲା । ଦିଅଁ କହିଲେ ହିଁ ହୋଇବ । ସାନବୋହୂ ଘରକୁ ଆସିଲା, ଏ ସବୁ ଘରକୁ ଆସିଲେ ଏହାର ବର କହିଲା, ସେତ ଏହା କହିଲା, ତେମେ ସବୁ କେମନ୍ତ ଅନ୍ୟ ପ୍ରକାର କହିଲ ? ଅଜି ଏହା କହିଲ, ଆଉ କେଉଦିନ ଆଉ କଣ କହିବ । ଦିଅ ତାକୁ ବାହାର କରିଦିଅ, ମତେ ବାହାର କରିଦିଅ, ଆମେ ଯାଉଛୁଁ । ଏହା କହି ସ୍ୱାମୀ ସ୍ତ୍ରୀ ଦୁହେଁଯାକ ଗଲେ ଘରୁ ବାହାରି । ଯାଇଁ ଆଉ ଗୋଟିଏ ରାଇଜରେ ଗୋଟାଏ ବରଗଛ ମୂଳରେ ବସିଛନ୍ତି, ସେ ରାଇଜର ରଜା ମରି ଯାଇଥାଏ ଯେ ହାତୀ ମୁଣ୍ଡରେ କଳଶ ଦିଅ ହୋଇଥାଏ, ଯାହା ଉପରେ ହାତୀ କଳଶ ଢାଳିବ ସେ ରଜା ହେବ । ହାତୀ କଳଶ ଘେନି ବୁଲୁଥାଏ, ଦେଖିଲା ଏ ଦୁହେଁ ବରଗଛମୂଳେ ବସିଛନ୍ତି, ସ୍ୱାମୀଙ୍କ ଉପରେ କଳଶ ଢାଳିଦେଲା, ସ୍ୱାମୀଙ୍କୁ ଉପରେ ବସାଇଲା, ନେଇ ସେ ରାଇଜରେ ରଜା କରାଇଲା । ଏ ରଜା ହେଲା, ଭାରିଯା ପାଟରାଣୀ ହେଲା, ରହିଲେ । ପୁଅ ଜନ୍ମ ହେଲା, ପୁଅର ନା ଦେଲେ, ଖଣ୍ଡୁଆଁ, କାନକଟା ହେଲା । ପୁଅ ବଢ଼ିଲା, ଦୁଆରେ ଗୋଟାଏ ଝୋଞ୍ଜାଗଛ ଲଗାଇ ଥାଏ, ପୁଅ ହାତରେ ଖଣ୍ଡିଏ ଅଙ୍କୁଡ଼ୀ ଦେଇଥାଏ, ପୁଅ ଫୁଲ ତୋଳୁଥାଏ, ଗୀତ ବୋଲୁଥାଏ

ପୋଖରୀ ଖୋଳା ଲାଗିଥାଏ, ଏହିପରି ଭାରୀ କାରଖାନା ଲାଗିଛି ତାର। ଏ ସାଧବଘର ବରାବର ମାଡ଼ି ଯାଇଗଲାପରି ଗଲେ, ପେଟକୁ ଦାନା ଅଣ୍ଟିଲା ନାହିଁ, ଚାଣ୍ଡିକି କନା ମିଳିଲା ନାହିଁ। ଶୁଣି ପାରିଲେ କୋଉ ଦେଶରୁ ଜଣେ ନୂଆ ରଜା ଆସିଛି ସେ ପୋଖରୀ ଖୋଳାଉଛି, କୂଅ ଖୋଳାଉଛି, ସବୁ ଦାନ ଧର୍ମ କରୁଛି। ଏମାନେ କହିଲେ ଆମର ଚାଲ ମାଟି ବୋହିବା ସେ ମୂଲ ଆଣି ପେଟ ପୋଷିବା। ଛଅ ବୋହୂଯାକ, ଶାଶୁ ଶଶୁର, ଛ ପୁଅ, ସମସ୍ତେ ଗଲେ, ଯାଇ ପୋଖରୀ ଉପରେ ବସିଲେ। ଯେ କଡ଼ାକଥା (୧) ପକାଉଥିଲା ତାକୁ କହିଲେ ଯା ତମ ସାଆନ୍ତାଣୀଙ୍କି କହିବ ସାତଜଣ ମରଦ ସାତଜଣ ମାଇପେ ଆସିଛନ୍ତି ତାଙ୍କୁ ମାଟି ବୁହାଇବେ ? ଜଣେ ଚାକରଆ ଯାଇ ରଜାଙ୍କୁ କହିଲା, ରଜା କହିଲେ ଯା ରାଣୀଙ୍କ ପଚାରିବୁ। ରାଣୀକି ଅସି ସେଇଆ କହିଲା, ରାଣୀ କହିଲେ ହଉ ସେ ମାଟି ବୋହନ୍ତୁ। ଏ ଜାଣିପାରିଲା, ଉପର ମହଲାକୁ ଚଢ଼ିଗଲା, ଦେଖିକରି ଆସିଲା; କହି ପଠାଇଲା ଯୋଉ ବୁଢ଼ା ବୁଢ଼ୀ ଦୋଟି, ତାଙ୍କୁ ଅଲଗ ମାଟି ଦେବ, ଯୋଉ ଛଅଟା ମରଦ, ଛଅଟା ମାଇପେ, ତାଙ୍କ ମୁଣ୍ଡରେ ଖୁବ ମଜଭୁତ୍ ବୋଝେ ଲେଖାଁ ଲଦିଦେବ। ଏମାନେ ମାଟି ବୋହିଲେ; ଖୁବ ବୋଝେ ଲେଖାଁ ମାଟି ନଅନ୍ତି, କଉଡ଼ି କଡ଼ାଏ ପାନ୍ତି। ଏ କଣକଲା ଏଣେ ପଛାଡ଼ ପାଖକୁ କହି ପଠାଇଲା, ଆଜ ବେଶୀକରି ଘେଷାଇ ବାସ କରିବ, ଭଲ କରି ତରକାରି କରିବ, ସବୁ ଆଣିବ ଏଅଡ଼େ ଦେଇଯିବ। ପୂଝାରି ଖେଷାଇବାସ କରି ରାଣୀଙ୍କ ଉଆ-

---

୧। ପ୍ରଥା ଅନୁସାରେ ବୋଝେ ମାଟି ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପକାଇଲେ କଡ଼ାଏ ବା ଦୁଇକଡ଼ା ବା ଅଧିକ ଦେବା ଲୋକକୁ କଡ଼ାକଥା କହନ୍ତି।

ଘରେ ଦେଇ ଆସିଲା । ଏ ଚାକରକୁ କହିଲା ସେ ଯୋଡ଼ ସାତ ଜଣ ମରଦ ସାତଜଣ ମାଇପେ ଆସିଛନ୍ତି ତାଙ୍କୁ, ଡାକ ଆଣ; ଚାକର ଡାକି ଆଣିଲା । ଏ ଜଣକଲା, ସାତଜଣ ଧଣ୍ଡ୍ରାଣ୍ଡ, ସାତ ଗିନା ତେଲ, ସାତ ଯୋଡ଼ା ପାଟଯୋଡ଼ ଯ୍ୟାଙ୍କୁ ସବୁ ସାତ ମରଦଙ୍କପାଇଁ ପଠାଇଲା; ସାତ ମାଇପିଙ୍କ ପାଇଁ ସାତ କାଚୁଆ ହଳଦ, ସାତ ଗିନା ତେଲ, ସାଭୁଠା ପୋଇଲା, ସାତଖଣ୍ଡ ପାଟଶାଢ଼ୀ ପଠାଇଦେଲା । ସେ ସବୁ ଲଗେଇ ପଗେଇ ହୋଇ ଗାଧୋଇ ପାଧୋଇ ଆସିଲେ, ଆଜ ଏ ସାନବୋହୂ ସାନ ପୁଅ ବୋଲି ଜାଣନ୍ତି ନାହିଁ, ମନେ ମନେ ହେଉ-ଥାନ୍ତି ସମସ୍ତେ ଏ ଆମକୁ ଏପରି ସବୁ ଜାହିର କରୁଛି, ଏ କଣ ଆମକୁ ଆଉ ମାରି ପାଇବ କି ? ଏପରି ମନରେ ପାଞ୍ଚି ହେଉଥାନ୍ତି । ଯୋଉଠୁଁ ଏମାନେ ଗାଧୋଇ ଆସିଲେ ଦେଖିଲା, ଦିଇଠା ଘରେ ଠା ପୀଢ଼ା କଲା, ଶଶୁର ଆଉ ଛ ଦେଢ଼ଶୁରଙ୍କୁ ଗୋଟାଏ ଘରେ ଦେଲା, ଶାଶୁ ଆଉ ଛ ଯାଙ୍କୁ ଆଉ ଗୋଟାଏ ଘରେ ଦେଲା । ସମ-ସ୍ତଙ୍କୁ ଲୁଣ ଦେଇଥାଏ, ଆଉ ଶାଶୁ ଶଶୁରଙ୍କୁ ଲୁଣ ଦେଇ ନଥାଏ ଯେତେଥର ଆସୁଥାଏ ପରଷିବାକୁ, ସେତେଥର ଘନ ଭଳରେ ଖଣ୍ଡେ ଲେଖାଁ ପାଞ୍ଚ ପଞ୍ଚ ଆସୁଥାଏ । ଏମାନେ ମନେ କରୁଥାନ୍ତି ଏହା ଘରେ ଏମନ୍ତ କେତେ ବୋହୂ ଅଛନ୍ତି କି ? ଏ ସମସ୍ତଙ୍କୁ ଆଗରେ ପଛରେ ଦେଇ ସାରିଲା, ଫେର କହିଲା ଆଉ କଣ ଦେବି ? ଶାଶୁ ଶଶୁର ଆଉ ଏତେକଥା ଜାଣିଚନ୍ତି ? କହିଲେ ଲୁଣ ଦୋଷ ଦେଲ । ଏ ସେତିକିବେଳେ କହିଲା, କେତେ ଦେବି ଲୁଣ, କି କହିବି ଏହି ଶାଶୁ ଶଶୁରଙ୍କ ଗୁଣ । ଏହା ଯୋଉଠୁ କହିଲା, ସମସ୍ତେ ଜାଣି ପାରିଲେ, କାନ୍ଦି ଉଠିଲେ; କହିଲେ ଯାହା କହିଥିଲ ସେଇଆ ହେଲା । ଆମେ ଯାହା କହିଥିଲୁ ଆମକୁ ବି ସେଇଆ ଫଳିଲା । ଏହିପରି କୁହା କୁହି ହେଲେ, ସେଠାରେ ମାସେ ଦିମାସେ ରହିଲେ । ସେତେଣେ ଅଲଗା ଉଆସ ତୋଳା ହେଲା, ସେମାନେ ସେଥିରେ ରହିଲେ,

ଘରଦୁଆର ହେଲେ, ମୁଁ ଗଛରୁ କଥା କହିଲେ ନାହିଁ । ମୋ କଥାଟି ସରିଲା, ଫୁଲଗଛଟି ମରିଲା ।

ହଇରେ ଫୁଲଗଛ କାହିଁକି ମରିଲୁ ? ମତେ ଗାଈ ଖାଇଗଲା ।

ହଇରେ ଗାଈ କାହିଁକି ଖାଇଲୁ ? ମତେ ଗଉଡ଼ ଜଗିଲା ନାହିଁ ।

ହଇରେ ଗଉଡ଼ କାହିଁକି ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲା ନାହିଁ ।

ହଇଲୋ ବଡ଼ବୋହୂ କାହିଁକି ଭାତ ଦେଲୁ ନାହିଁ ? ମତେ ପୁଅ ଛାଡ଼ିଲା ନାହିଁ ।

ହଇରେ ପୁଅ କାହିଁକି ଛାଡ଼ିଲୁ ନାହିଁ ? ମତେ ଧୂଳିଆ ପନ୍ଦା କାମୁଡ଼ିଲା ।

ହଇରେ ଧୂଳିଆପନ୍ଦା କାହିଁକି କାମୁଡ଼ିଲୁ ? ମୁଁ ତଳେ* ଥାଏ କଅଁଳ ମାଉଁସ ପାଇଲେ ରୁଠ୍ କରି ଖାଏଁ ।





## ଶ୍ୱେତ ବସନ୍ତ କଥା ।

ଗୋଟିଏ ମାଳିଟିଏ, ସେ ଭାରି ଦୁଃଖୀଟିଏ । ଏ ମାଳିର ଦୁଇ ପୁଅ, ବଡ଼ପୁଅ ନା ଶ୍ୱେତ, ସାନ ପୁଅ ନା ବସନ୍ତ । ଦୁଇ ଭାଇ ଏହିପରି

* ପ୍ରତ୍ୟେକ କାହାଣୀର ଉପସଂହାରରେ କଥକ୍‌ମାନେ ଏହି କଥାଗୁଡ଼ିକ କହିଥାନ୍ତି କେହି କେହି ବା କେବଳ ନିମ୍ନଲିଖିତ କେତୋଟି ଶବ୍ଦ ଉଚ୍ଚାରଣ କରି କାହାଣୀର ଉପସଂହାର କରନ୍ତି ।—

"ମୋ କଥାଟି ଏତିକି ସରିଲା ଫୁଲଟିଏ ଖଞ୍ଜିଲା କଥା କେତକୀ ।"

ଦୁଃଖ ପାଇ ରହୁଥାନ୍ତି, ମାଲି ତା ସ୍ତ୍ରୀ ଦୁହେଁଯାକ ମରଗଲେ ଆଉର କେହି ଅଶ୍ରା ନାହିଁ, ଏ ଦୁହେଁ ଦାଦିଘରେ କାମ ଦାମ କର ରହୁଥାନ୍ତି । ଦିନେ ଦାଦିର ସୁନା ମୁଦି ଚୋରଗଲା, ଦାଦି ଏ ଦୁହିଁଙ୍କି ଧରିଲା । ଏ ଦୁହେଁ କହିଲେ ଆମେ ନେଇ ନାହୁଁ । ଦାଦି ଏମାନଙ୍କ କଥା ସତ ନ କର ଏ ଦୁହିଁକି ତଡ଼ଦେଲା । ଏ ଦୁହେଁ କାନ୍ଦି ବୋବେଇ ଘରୁ ବାହାରି ଗଲେ, ଯାଇଁ ଗୋଟାଏ ବନସ୍ତରେ ପହଞ୍ଚିଲେ । ସେ ବନସ୍ତରେ ଗୋଟିଏ ଶୁଆଟିଏ ଗୋଟିଏ ସାରିଟିଏ ଗଛରେ ବସି କଥା ହେଉଛନ୍ତି—ଶୁଆ କହୁଛି ମତେ ଯେ ଧରିବ ସେ ରଜା ହେବ, ସାରି କହୁଛି ମତେ ଯେ ଧରିବ ସେ ଚାଲିଲେ ପଦ୍ମ ଫୁଟିବ, କାନ୍ଦିଲେ ମୁକ୍ତା ଝଡ଼ିବ । ଏହିପରି କୁହାକୁହି ହେଉଅଛନ୍ତି; ଏ ଦୁଇ ଭାଇ ଶୁଣିଲେ ଧରିବାକୁ ଗଲେ । ଶ୍ୱେତ ଧରିଲା ଶୁଆଟିକୁ, ବସନ୍ତ ଧରିଲା ସାରିକୁ । ଧରି କରି ଆଣି ଭୋକ ବକଳରେ ଦୁହେଁ ଦୋଟିଯାକ ଖାଇ ଦେଲେ । ଖାଇ ସାର ବସନ୍ତ କହିଲା ମୋତେ ଶୋଷ କରୁଛି; ପାଣି କେଉଁଠି ମିଳିବ ? ଶ୍ୱେତ କହିଲା, ତୁ ଏଇଠି ବସଥା ମୁଁ ପାଣି ଆଣେ; ଏହା କହି ପାଣି ଖୋଜିବାକୁ ଗଲା । ସେ ଗାଡ଼ଥିଲେ ହୋଇଛି, ସେ ଦେଶର ରାଜା ମରି ଯାଇଛନ୍ତି ସେ ହାତୀ କଳସ ଧରି ବୁଲୁଛି, ଯାହାକୁ ମନ କରିବ ତା ଉପରେ କଳସ ଢାଳି ଦେବ; ଶ୍ୱେତକୁ ଦେଖି ତା ଉପରେ କଳସ ଢାଳି ଦେଲା । ପାତ୍ର ମନ୍ତ୍ରୀ ସମସ୍ତେ ଶ୍ୱେତକୁ ହାତୀରେ ବସାଇ ନେଇ ଗଲେ; ରାଜା କଲେ । ଶ୍ୱେତ ରଜା ହୋଇ ସବୁ ବୁଝିଲା, ଖାଲି ବସନ୍ତ ପାଇଁ ଭାବ ହେଉଥାଏ ମନେ ମନେ । ଏଣେ ବସନ୍ତ ଭାଇଙ୍କ ଅନାଇ ଅନାଇ ଆଉ ଭାଇ ଆସିଲା ନାହିଁ ଯୋଉଠି; କାନ୍ଦି କାନ୍ଦି ବନସ୍ତଭିତରକୁ ବାହାରିଲା । ବାଟରେ କାନ୍ଦିଲାଖଣି ମୁକ୍ତା ଝଡ଼ୁଥାଏ; ପାଦ ପକାଇଲାରୁ ପଦ୍ମ ଫୁଟୁଥାଏ ଏହିପରି ବାଟଯାକ ହୋଇ ଯାଉଥାଏ । ବସନ୍ତ ମୁକ୍ତାତକ ଗୋଟାଇ ରଖୁଥାଏ, ବାଟ ଚାଲୁଥାଏ । ଭାଇଙ୍କ ତ ପାଇଲା ନାହିଁ

ବୁଲି୨ ସେ ଯୋଉ ଗାଁରେ ରଜା ହୋଇଛି ସେହି ଗାଁରେ ଗୋଟିଏ କୁମ୍ଭାର ଘରେ ରହିଲା । ଲୁଗାପଟା ତ ନ ଥାଏ, ଖଣ୍ଡିଏ ଚିରାଲୁଗାରେ ସେ ମୁକ୍ତାତକ ବାନ୍ଧି କୁମ୍ଭାର ଘରେ ଗଣ୍ଡିଏ୨ ଖାଇ କାମଦାମ କରୁଥାଏ । ଏହାପରେ କେତେଦିନ ଗଲା, ରାଜା ଚୋର ଜଗିବାକୁ ମନସ୍ଥ ଦରକାର ହେଲେ, ଗ୍ରାମରେ ଯେତେ ଘର ସମସ୍ତଙ୍କ ଘରୁ ଜଣେ୨ ଜଗିବାକୁ ଗଲେ । କୁମ୍ଭାରଘରୁ ବସନ୍ତ ଚୋର ଜଗିବାକୁ ଗଲା । ହେନେ ବସନ୍ତ ନ ଥିଲାବେଳେ କୁମ୍ଭାର ତାର ଲୁଗାପଟା ଫିଟାଇ ଦେଖେ ଯେ, ମୁକ୍ତା ସବୁ ଜକ ଜକ ହେଉଚି । ମୁକ୍ତାଗୁଡ଼ିକ ସେଥିରୁ ନେଇଗଲା, ଢାଳଗୁଡ଼ିଏ ବାନ୍ଧି ଦେଲା । ବସନ୍ତ ଆସି ଦେଖେ ଯେ ମୁକ୍ତାତକ ନାହିଁ । କୁମ୍ଭାରକୁ ପଚାରିଲାରୁ କୁମ୍ଭାର ନାହିଁକରି ମାରି ଗୋଡ଼ାଇଲା । ବସନ୍ତ ଆଉ କଣ କରିବ, ଚୁପ ହୋଇ ରହିଲା । ନିତି ରାତିକି ବସନ୍ତ ଚୋର ଜଗିବାକୁ ଯାଏ; ସେଠାରେ ସମସ୍ତେ ସମସ୍ତଙ୍କ ଦୁଃଖ ସୁଖ କଥାବାର୍ତ୍ତା ହୁଅନ୍ତି । ହେନେ କଥା ପଡ଼ୁ୨ ବସନ୍ତର କଥା ସମସ୍ତେ ପଚାରିଲେ । ବସନ୍ତ କହିଲା ଦୁଃଖ କହିବି କି ସୁଖ କହିବି; ଯାହା ଅଗେ ନହେଇଚି ତାହା କହିବି । ତା ଜୀବନର ସବୁ ଘଟଣା କହିଗଲା । ଯେମନ୍ତ ସେ ଦୁଇଭାଇ ଥିଲେ ବାପ ମା କେମନ୍ତ ମରିଯିବାରୁ ଦାଦା ଘରେ ଥିଲେ, ଦାଦିର ମୁଦି ଚୋରଯିବାରୁ ଦାଦି ଯେମନ୍ତ ତଡ଼ି ଦେଲା, ବନସ୍ତରେ ଶୁଆ ସାରୀ ଯାହା୨ କହିଥିଲେ; ଶ୍ୱେତ ପାଣି ପାଇଁ ଯାଇ ଯେମନ୍ତ କୁଅରେ ରହିଲା, ଏ କୁମ୍ଭାରଘରେ ରହିଥିଲା; ଏହାର ମୁକ୍ତାତକ ଯେମନ୍ତ କୁମ୍ଭାର ନେଇଗଲା; ସବୁ କଥା ସେମାନଙ୍କ କହିଗଲା । ଏମାନେ ଶୁଣି ବଡ଼ ବ୍ୟସ୍ତ ହେଲେ, ଯାଇ ରାଜାଙ୍କୁ ସବୁ କଥା କହିଲେ । ରାଜା ବସନ୍ତକୁ କୁମ୍ଭାର ଘରୁ ଡକାଇ ଆଣିଲେ, ତାକୁ ତାର ପରିଚୟ ପଚାରିଲେ । ବସନ୍ତ ଆଦ୍ୟରୁ ପ୍ରା ପର୍ଯ୍ୟନ୍ତ ସବୁ କହିଗଲା । ଶ୍ୱେତ ବସନ୍ତ ଦିହେଁ ଯାକ ଚିହ୍ନାଚି

ହେଲେ, କେତେ କାନ୍ଦିଲେ । ଶେଷରେ ବସନ୍ତକୁ ସ୍ଥିର କରାଇ ଆଣିଲା । ପଶ୍ଚିମତୀର୍ଥ ପାଣିରେ ଗା ଧୋଇ ନେବେ ଭଲ ଲୁଗାଯାଏ । ପିନ୍ଧାଇଲା ପାତ୍ର ମନ୍ତ୍ରିଙ୍କି ଡକାଇ ତାଙ୍କୁ ଯୁବରାଜ କରିବାର ହୁକୁମ ଦେଲା । ମନ୍ତ୍ରୀ ହେଉରଙ୍କା ଛତ୍ର ଚାମର ଧରିଲେ, ସିଂହାସନ ଉପରେ ବସନ୍ତ ବସିଲା, ହାତୀ ସୁବର୍ଣ୍ଣ କଳସ ଢାଳି ତାଙ୍କୁ ଅଭିଷେକ କଲା । ବସନ୍ତ ଯୁବରାଜ ହେଲା; ଶେଷ ବସନ୍ତ ଦୁହେଁ ଯାକ ପରଜାଙ୍କୁ ବଡ଼ ସୁଖରେ ପାଳିଲେ । ବାହାଚୋରୀ ହୋଇ ସୁଖରେ ରହିଲେ । ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।

———

## ଚମ୍ପାଚୋରୀ ଦାସୀର କଥା ।

ଗୋଟିଏ ରଜାଥିଲେ, ତାର ଗୋଟିଏ ଚମ୍ପାଦେଈ ନାମରେ ଝିଅ, ଝିଅଟି ବଡ଼ ହେବାରୁ ତା ପାଇଁ ବର ଘର ଲାଗିଲା । ବରର ନାମ ଷୋଳଶିଂଘା ମହାତ୍ମା । ରଜା ଝିଅଙ୍କ; ସେ କଣ ଜାଣନ୍ତି । ଝିଅ ମନେ ମନେ କଲା ସେ ବରର ଷୋଳଟା ସିଂଘ । ମନେ ମନେ ବଡ଼ ଭାବନାରେ ଥାଏ, ବିଭାଘର ଦିନ ବର ଅତି ଅଧବାଟରେ ହେଲାଣି, ଚମ୍ପାଦେଈର ମନ ବଡ଼ ଛଟପଟ ହେଲା । ତାର ଗୋଟିଏ ସମ-ବୟସ୍କ ଦାସୀ ଥିଲା, ତାର ନାମ ଚମ୍ପାଚୋରୀ. ତାକୁ କହିଲା ଯା ତୁ ବରକୁ ଦେଖି ଆସିବୁ ତା ଶିଙ୍ଘଗୁଡ଼ିକ କିପରି ? ଚମ୍ପାଚୋରୀ ବରକୁ ଦେଖି ଆସିଲା; ମିଛରେ ଆସି କହିଲା ଶିଙ୍ଘ ଗୁଡ଼ାକ କି ଅବା-କିଆ ଦେଖଣି, କେଉଁ ଶିଙ୍ଘରେ କନାଖଣ୍ଡ ଗୁଡ଼ିଆ

ହୋଉଚି; କେଉଁ ଶିଙ୍ଘରେ ଅଳ୍ପୁଆଳାଳ ଗୁଣ୍ଡ଼ଥ ହୋଉଚି କେଉଁ ଶିଙ୍ଘ ନଷ୍ଟ ନଡ ହେଉଛୁ; ଏହିପରି କହି ଚମ୍ପାଦେଈ ମନରେ ଅଗଣଉଁ ବେଶି ଦୟ୍ରୁ ଜାନ୍ତ କରାଇଦେଲା । ଚମ୍ପାଦେଈ ଚମ୍ପୀତୋଣ୍ଡୀକୁ କହିଲା ମୁଁ ତାକୁ ବଭା ହେବି ନାହିଁ, ତୁ ତାକୁ ବଭା ହୋ; ମୁଁ ପଛକେ ତୋର ଦାସୀ ହୋଇ ଯିବି । ଚମ୍ପୀତୋଣ୍ଡୀ ଚମ୍ପାଦେଈର ସଜ୍ଜପତ୍ର ଲଗାଇ କନ୍ୟା ସାଜିଲା ଓ ଚମ୍ପାଦେଈ ଚମ୍ପୀତୋଣ୍ଡୀର ସଜ୍ଜପାତ୍ର ଲଗାଇ ଦାସୀବେଶ ହେଲା, ବଭାଘର ହେଲା । ଚମ୍ପୀତୋଣ୍ଡୀ ଷୋଳଶିଙ୍ଘା ମହାରାଜାକୁ ବଭା ହେଲା, ଚମ୍ପାଦେଈ ତା ସଙ୍ଗରେ ଦାସୀହୋଇ ଗଲା । ଚମ୍ପାଦେଈ ଯେତେବେଳେ ଜାଣିପାରିଲା ଯେ ଚମ୍ପୀତୋଣ୍ଡୀ ତାକୁ ମିଛରେ ଅତିସୁନ୍ଦର ଷୋଳଶିଂଘା ରାଜାକୁ ବଭାହେଲା ତାର ମନରେ ଅତିଶୟ୍ଯ କଷ୍ଟ ହେଲା । ନିଜେତ ଏ କଥା କରିଚି, ଅଉ କଣ କରିବ । ତୁନି ହୋଇ ରହିଲା । ଷୋଳଶିଂଘା ରାଜାର ଆଉ କେହି ନାହାନ୍ତି; ଚମ୍ପୀତୋଣ୍ଡୀ ରନ୍ଧାବଢ଼ା କରେ ରଜାକୁ ଖାଇବାକୁ ଦିଏ; ନିଜେଖାଏ ଅଉ ଚମ୍ପାଦେଈକି ଖାଇବାକୁ ଦିଏ । ଚମ୍ପାଦେଈ ଦାସୀ ହୋଇ ରହି ଖାଏ ନାହିଁ, ନଈକୂଳକୁ ନେଇ ଫୋପାଡ଼ି ଦିଏ, କହେ ଛିଟ୍‌ଛିଟ୍ କାଉ, ଚମ୍ପୀତୋଣ୍ଡୀ ହାତରେ କି ଚମ୍ପାଦେଈ ଖାଉ । କେହି ନଖାଉ, ସେତ ବନ୍ଧ ହୋଇଥାଉ । ଏହିପରି ସବୁଦିନେ କରେ । ସେ ନଈକୂଳେ ଗୋଟିଏ ଧୋବା ଲୁଗା କାଚୁଥାଏ, ସେ ରାଜାଙ୍କ ଧୋବା, ଏହା ସେ ପ୍ରତିଦିନ ଦେଖେ । ଦିନେ ଯାଇ ରଜାଙ୍କୁ କହିଲା, ମଣିମା ! ଗୋଟିଏ କଥା କହିବାକୁ ଭାରି ଭୟ ମାଡ଼ୁଚି, ରଜା କହିଲେ କିଛି ଭୟ ନାହିଁ କହ । ଧୋବା କହିଲା ମଣିମାଙ୍କ ଉଆସରୁ କିଏ ଗୋଟିଏ ନିତିନଈକୂଳକୁ ଯାଏ, ଭାତ ନଈକୂଳେ କୁଢ଼ାଇ ଦିଏ, କହେ ଛିଟ୍ ୨ କାଉ, ଚମ୍ପୀତୋଣ୍ଡୀ ହାତରେ କି ଚମ୍ପାଦେଈ ଖାଉ ? କେହି ନ ଖାଉ ସେତ ବନ୍ଧ ହୋଇ ଥାଉ । ରଜା ନିଜେ ଏକଥା ଦେଖିବାକୁ ଦିନେ ଲୁଚି

ରହିଲେ, ଦେଖିଲେ ଦାସୀ ଭାତଗୁଡ଼ାକ ଲୁଚାଇଦେଉ ଏପରି କହୁଚି ହଠାତ୍ ବାହାରି ପଡ଼ି ଦାସୀକୁ ଏ କଥାମାନଙ୍କର କାରଣ ପଚାରିଲେ ରମ୍ଭାଦେଈ ନାହିଁ ୨ କହୁଥାଏ, ଶେଷରେ ରଜା ଜିଗର କରିବାରୁ ସବୁ କଥା ଅଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଲେ । ରଜା ଘରକୁ ଗଲେ, ଗୋଟାଏ ଟୋପର ଖୋଲାଇଲେ, ଲକ୍ଷ୍ମୀଦେବୀଙ୍କୁ ଡକାଇ ପଚାରିଲେ ଏଥରେ କେତେ ଧାନ ସମ୍ଭାଇବ । ଏ ଅଡ଼ ଏତେକଥା ଜାଣେଚି ? ନାଇଁ ପଡ଼ି ଖଣ୍ଡିକୁ ଅନାଇଲା, ରଜା ତାକୁ ଖଣ୍ଡି ଉଡ଼ରକୁ ପେଲି ଦେଲେ, ଢାଲକଣ୍ଠା ଉପରକଣ୍ଠା ପକାଇଦେଲେ, ମାଟି ଘୋଡ଼ିଦେଲେ ରମ୍ଭାଦେଈକି ପାଟରାଣୀ କଲେ, ଘର ଦୁଆର କଲେ, ସୁଖରେ ରହିଲେ, ମୁଁ ଗଲିକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।

—୧—




ଗୋଟିଏ ସାଧବଟିଏ ଯେ ତାହାର ସାତ ଝିଅ । ଦିନେ ଜହ୍ନପଡ଼ନ୍ତି ସାତ ଭଉଣୀଯାକ ଅଗଣାରେ ଖେଳୁଥାନ୍ତି, ବିଚାର କଲେ ଜହ୍ନ କୋଉଠି ଛୁଡ଼ୁଚି ଚାଲ ଯିବା ଦେଖିବା । ସାତ ଭଉଣୀଯାକ ଗଲେ, ଯାଇଁ ଗୋଟିଏ ବୁଢ଼ୀଅସୁରୁଣୀ ଦୁଆରେ ଜହ୍ନ ଛୁଡ଼ିବାର ଦେଖିଲେ, ସେଇଠି ସଭି ପାହିଲେ । ଦେଖିଲେ ବୁଢ଼ୀଅସୁରୁଣୀ ଧାନ ଉଷାଉଚି ଗୋଟାଏ ଗୋଡ଼ ଚୂଲିରେ ମୁହାଁଇ ଦେଇଚି ଆଉ ଗୋଟାଏ ଗୋଡ଼ି ଯ୍ବାଡ଼କୁ ଲମ୍ବାଇ ଦେଇଚି । ବୁଢ଼ୀଅସୁରୁଣୀ ଏମାନଙ୍କୁ ଦେଖିଲାକ୍ଷଣି କହିଲା, ଆସନ୍ତୁ ପିଲାମାନେ କୁଆଡ଼େ ଯାଉଚ, ଏଇଠି ବସ, ଖେଳ, ପିଲାମାନେ କହିଲେ ନାହିଁ ଆମେ ଜହ୍ନ କୋଉଠି ଛୁଡ଼ୁଚି ଦେଖିବାକୁ

ଆସିଥିଲୁଁ, ଆମ ଘରକୁ ଆମେ ଫେର ଯାଉଛୁଁ । ସେମାନଙ୍କୁ ଅଟକାଇବାକୁ ବୁଢ଼ୀଅସୁରୁଣୀ କେତେ ଫୁସଲାଇଲା, ଏମାନେ କେହୁ ରହିଲେ ନାହିଁ, ଚାଲିଆସିଲେ । କେତେକ୍ଷଣ ପରେ ବୁଢ଼ୀଅସୁରୁଣୀର ପିଲାମାନେ ଚରିବାକୁ ଯାଇଥିଲେ ଆସିଲେ । ବୁଢ଼ୀଅସୁରୁଣୀ କହିଲା କୁଆଡ଼େ ଯାଇଥିଲ, ଏତେବେଳେ କେ ଆସିଲ; ଏହି ଦଣ୍ଡକ ମଧ୍ୟରେ ଆସିଥିଲେ ଅଇଛୁଆ କି ସୁନ୍ଦର ଦରବ ଖାଇଥାନ୍ତ; କଁଇସିକାକୁଡ଼ିପରି ମୁଡ଼ୁ ୨ କରି ଚୋବାଇ ଥାନ୍ତ, କି ସୁନ୍ଦର ପିଲାବୁଢ଼ାଏ ଆସିଥିଲେ । ଏବେ ଯାଆ ତାଙ୍କ ଭିତରୁ ଜଣକ କାନରେ ମୁଁ ସୋରିଷ ବାନ୍ଧି ଦେଇଛି, ସୋରିଷ ବାଞ୍ଛି ୨ ଯାଉଥିବ, ଗଛ ଉଠି ୨ ଯାଉଥିବ, ଫୁଲ ଫୁଟି ୨ ଯାଉଥିବ ସେହି ବାଟକୁ ଅନାଇ ୨ ଯିବ; ସେମାନଙ୍କୁ ପାଇବ । ଅସୁରପିଲାମାନେ ଦୌଡ଼ିଲେ, ସାଧବଝିଅଙ୍କ ପାଖରେ ଲାଗିବାକୁ ଅଳପ ବାଟ ଅଛି ଏମାନେ ପଛକୁ ଅନାଇ ଦେଲେ, ଦେଖିଲେ ଅସୁର ଛୁଆ ସାତଟ ତାଙ୍କ ପଛେ ୨ ଦୌଡ଼ୁଛନ୍ତି । ଏମାନଙ୍କ ବୁଦ୍ଧି ହଜିଗଲା; କଣ କରିବେ ବୋଲି ଅଉ ବୁଦ୍ଧି ଦିଶିଲା ନାହିଁ । ବାଟରେ ଗୋଟିଏ ଅମ୍ବଗଛ ଥିଲା ତା ପାଖକୁ ଯାଇଁ ସାଧବଝିଅମାନେ କହିଲେ, ହେ ଅମ୍ବଗଛ ତୁ ଯଦି ସତ୍ୟଯୁଗର ଗଛ ହୋଇଥିବୁ ତୁ ଫାଟି ଯିବୁ ଆମେ ତୋ ଭିତରେ ପଶିଯିବୁ, ତୁ ବନ୍ଦ ହୋଇ ଯିବୁ । ଅସୁରଛୁଆ ସବୁ ଆସି ପହଞ୍ଚିଲା ବେଳେ ଏମାନେ ଅମ୍ବଗଛରେ ପଶି ଗଲେଣି । ସେ ଗଛମୂଳେ ଗୋଟାଏ ପୋଖରୀ ଥିଲା; ଅସୁରଛୁଆ ମାନେ ସେ ପୋଖରୀରୁ ପାଣି ଅଣି ଗଛମୂଳେ ଅଜାଡ଼ି ପୋଖରୀର ପାଣି ଶୁଖାଇ ଦେଲେ । ଗଛକୁ ଦୋହଲାଇ ୨ ଓପାଡ଼ି ତଳେ ପକାଇ ଦେଲେ । ଧୋବାଘରୁ କୁରାଢ଼ି ଆଣି ଗଛକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲେ, ମଞ୍ଜି ଗରଟି ମୁଣ୍ଡାଇ ଘରକୁ ନେଇ ଚାଲେ ନେଇ ବାଡ଼ିହୁଅରେ ପକାଇ କୁରାଢ଼ୀରେ ତାକୁ ଚିରିବାକୁ ବସିଲେ ସାଧବଝିଅମାନେ ସେ କାଠ ଗଡ଼ ଭିତରୁ ହୁଳହୁଳି ପକାଇଲେ ବୁଢ଼ୀଅସୁରୁଣୀ ହୁଳହୁଳି ଶୁଣି ତାର ପିଲାମାନଙ୍କୁ ମାରି ଗୋଡ଼ାଇଲା

କହିଲା ମୋ ଦୁଆରେ ତ ଜାଣୀ କି ଗୋଆଣୀ କି କଣଟୋଇଦେ ପକାଇଛ, ଯାକୁ ଉଠାଅ । ଅମୃତକୁମ୍ଭମାନେ ମାଇକିନା ଖୋଜ ସେ କାଠ ଗରଜୁ ନେଇ ସେ ଅମ୍ବଳ ମୂଳେ ପକାଇ ଦେଇ ଆସିଲେ । ସେତବେଳକୁ ସଞ୍ଜ ଲାଗିଥିଲା, ଏ ପିଲାଗୁଡ଼ିକ କାଠଭିତରୁ ବାହାରିଲେ, ବନସ୍ତେ ବନସ୍ତେ ଘରକୁ ଯିବାକୁ ବସିଲେ । ଯାଉଁ ବାଟରେ ବଣାହୋଇ କିଏ କୁଆଡ଼େ ଗଲେ । ସବା ସାନ ଝିଅଟି ବୁଲି ବୋଠି ଏ ରଜାନଅର ଦେଖିଲା, ସେ ନଅର ଦୁଆରେ ଗୋଟିଏ କାଠ ଖମ୍ବ ଥିଲା, ସେଇଠି ପହଞ୍ଚିଲା, କହିଲା ଯେମନ୍ତ ସତ୍ୟଯୁଗ ହୋଇଥିବ, ଏ ଖମ୍ବ ଫାଟିଯିବ ମୁଁ ଭିତରେ ପଶିଯିବ । କାଠଖମ୍ବ ଫାଟିଗଲା, ସାଧବ ଝିଅ ଭିତରେ ପଶିଗଲା । ସେଇଥିରେ ଥାଏ; ରାତିରେ ସମସ୍ତେ ଖାଇ ପିଇ ଶୋଇଲେ, ଏଥିରୁ ପଦାକୁ ବାହାରେ, ଖାଧୁଆପାଧୁଆ କରେ, ଫେର ସେଇଥିରେ ପଶିଯାଏ, ଏହିପରି ସବୁଦିନେ କରୁଥାଏ । ସେ ରଜାର ପୁଅ ସବୁଦିନେ ଶୁଣେ ଯେ କୋଉଠି କିଏ ଦୁଆରେ ଝୁଣ୍ଟୁ ହୋଇ ଅସ ଯା କରୁଚି, ମାତ୍ର କିଛି ବୁଝି ପାରେ ନାହିଁ । ଦିନେ ସେ ରଜାଙ୍କ ଦୁଆରେ ପାଲା ହେଲା, କେତେ ଲୋକ ଦେଖିବାକୁ ଆସିଲେ । ସାଧବଝିଅ କାଠଖମ୍ବରୁ ବାହାରି ପାଲା ଦେଖିବାକୁ ଗଲା । କେହି ଦେଖିବେ ନାହିଁ ବୋଲି ମେଘନାଦ ପାଚେରି ଉପରେ ବସି ପାଲା ଦେଖୁଥାଏ । ରଜାପୁଅ ସେଠାରେ ଘୋଡ଼ାଦୌଡ଼ କରୁଥାଏ, ତାର ପାଚେରି ଉପରକୁ ନଜର ପଡ଼ିଗଲା, ଦେଖେ ଯେ ଉତ୍ତମ ସୁନ୍ଦରୀ ସ୍ତ୍ରୀଟିଏ ବସିଚି, ତାକୁ ଦେଖି ପାଚେରି ଅଡ଼କୁ ଦୌଡ଼ି ଆସିଲା । ରଜାପୁଅ ଆସିବାର ଦେଖି ସାଧବ ଝିଅ ଦୌଡ଼ି ଆସି କାଠଖମ୍ବରେ ପଶିଗଲା, ରଜା ପୁଅ ଆଉ ଏହା ଦେଖି ପାରିଲା ନାହିଁ ପାଚେରି ଉପରୁ ଦୌଡ଼ିଆସିଲାବେଳେ ସାଧବଝିଅ ଗୋଡ଼ରୁ ନେପୁର ଗୋଟିଏ ଖସିପଡ଼ି ଥିଲା, ରଜାପୁଅ ତାକୁଇ ପାଇ ରଖିଥାଏ, ସବୁବେଳେ ଦେଖୁଥାଏ । ମନେ ମନେ ଖାଲି ଭାବ ହେଉଥାଏ ଏ ନେପୁରର ମନ୍ଦ୍ରେ

ସୁନ୍ଦର, ସେ ସ୍ତ୍ରୀ କେତେ ସୁନ୍ଦରୀ ହୋଇ ନ ଥିବ । ଏହିପରି ଝୁରି ୨ ରାଜାପୁଅର ଆଉ ଅବସ୍ଥା (୧) ରହିଲା ନାହିଁ, ଖାଲି କଣ୍ଠା ଦୋହଲିଲା । ଅନେକ ବଇଦ ଲାଗିଲେ, ରାଇଜର ଚେଷ୍ଟା ହେଲା; କାହିଁରେ କିଛି ଭଲ ହେଲା ନାହିଁ । ରଜାପୁଅ ବରାବର ମଲାସମାନ ହୋଇଗଲା । ବଞ୍ଚିବାରର ଆଉ ଆଶା ନାହିଁ, ରଜାପୁଅ କହିଲା ମୋର ଭଉଣୀମାନଙ୍କୁ ଡକାଅ ମୁଁ ସେମାନଙ୍କୁ ଦେଖିବି । ଭଉଣୀମାନଙ୍କ ପାଖକୁ ଖବର ଗଲା, ସମସ୍ତେ ଆସିଲେ, ଖାଲି ସାନଭଉଣୀ ଆସି ନ ଥାଏ । ସାନ ଭଉଣୀ ଘର ବହୁତ ଦୂର, ଆସୁ ଆସୁ ବାଟରେ ଗୋଡମାନଙ୍କୁ ଖରା ବରଷା ପାରିବାକୁ ପଡିଲା । ଗୋଟିଏ ଗଛମୂଳେ ସୁଅରକୁ ଉଡ଼ି ଦେଇ ଗଉଡମାନେ ଜଳଖିଆ କରିବାକୁ ଗଲେ । ରଜାଝିଅ ସେଇଠି ଥାଏ ସେ ବରଗଛରେ ଗୋଟାଏ ଫୁଲଶାଗୁଣୀର ବସା । କୋଉଠି ମଡ଼ା ପଡ଼ିଥିଲା ସେ ଶାଗୁଣୀ ଖାଇକରି ଆସିଥାଏ, ପିଲାଙ୍କପାଇଁ ଆଣି ନ ଥାଏ । ପିଲାଯାକ କେଁକଟର ଲଗାଇ ଥାନ୍ତି, ମା ତୁ ଖାଇଲୁ ଆମପାଇଁ ଆଣିଲୁ ନାହିଁ, ଫୁଲଶାଗୁଣୀ କହିଲା ତେମେ ସବୁ କାହିଁକି ସେମିତି ହେଉଚ, ରଜାପୁଅ ଏହିକ୍ଷଣି ମରିବ ତେମେ ଆନନ୍ଦରେ ଖାଇବ । ପିଲାଯାକ କହିଲେ ନାହିଁ ମା ସେ କାହିଁକି ମରିବ, ଆମେ ପଛକେ ନ ଖାଉଁ ସେ ଜୀଇ ଥାଉ । ଶାଗୁଣୀ କହିଲା ତାକୁ ଆଉ କିଏ ବଞ୍ଚାଇବ ତାରିତ ସବୁ ଏମନ୍ତ ୨ କଥା ହେଉଚି, କିଏ ଜାଣିଥାନ୍ତା କି ସେ କାଠ ଖମ୍ଭକୁ ଭାଙ୍ଗି ଦିଅନ୍ତା ଯେ ସେ ସାଧବଝିଅ ବାହାରି ପଡନ୍ତା, ତାକୁ ଦେଖିଲାକ୍ଷଣି ରଜାପୁଅ ଦେହରେ ଜୀବନ ପଶିଯାନ୍ତା । ଏହା ସବୁ ସାନଭଉଣୀ ଶୁଣି ସୁଅର ଉଠାଇବାକୁ ଗଉଡ ସାଙ୍ଗେ ଉଚ୍ଛନ ଲଗାଇଲା । ଗଉଡମାନେ ସୁଅର ନେଇ ରଜାଙ୍କ ଦୁଆରେ ଉଡ଼ିଲେ

---

(୧) ଦେହର ବଳ ସ୍ୱାସ୍ଥ୍ୟ ।

ରଜାଙ୍କ ଘରେ କାନ୍ଦବୋବାଳି ପଡ଼ିଥାଏ, ତାହାଙ୍କ ମନରେ ସୁଖ ନ ଥାଏ । ସାନଭଉଣୀ ଯାଇ ଦେଖେ ଯେ ଗୁଳ ଶୋଇଛନ୍ତି, ହଠାତ୍ ତାହାଙ୍କୁ କିଛି ନ କହି ଗୋଟାଏ କୁରାଢ଼ି ନେଇ ଆସି, ତାଙ୍କ ମୁଣ୍ଡରେ ଜୋର ପାହାରେ ଦେଲା । ତତ୍‌କ୍ଷଣ ଚୁନା ହୋଇଗଲା, ସଂଥେ ସିଅ ଭିଣ୍ଡରୁ ବାହାରି ପଡ଼ିଲା । ତାକୁ ଧରିନେଇ ଗଲେ, ରଜାପୁଅ ଆଗରେ ଛିଡ଼ା କରିଦେଲେ, ତାକୁଦେଖି ତା ଦେହରେ ଜୀବ ପଶିଲା । ରଜାପୁଅ କ୍ରମେ ଭଲ ହୋଇଗଲା, ସେହି ସାଧବ ଝିଅକୁ ବାହା ହେଲା, ଭଉଣୀ ମାନଙ୍କୁ ହଟେଇ ଖେଳେଇ ବିଦା କଲା, ଆନନ୍ଦରେ ସୁଖ ରାଜତ୍ୱ କଲା, ମୁଁ ଗଲାକୁ କଥା ନ କହିଲା । ମୋ କଥାଟି ସରିଲା ଇତ୍ୟାଦି ॥

——❀·❀——




ଗୋଟିଏ ଗଉଡ଼ଙ୍କଏ ଯେ ତାର ଗୋଟିଏ ପୁଅ । ଗଉଡ଼ ଟୋକାଟି ନିତି ଗାଈ ଜଗିବାକୁ ଯାଏ, ବିଲ ପାଖରେ ଗୋଟାଏ ମଣ୍ଡା-ଗଛ ଥାଏ ତହିଁରେ ଚଢ଼େ, ମଣ୍ଡାପିଠା ଖାଏ, ବେଳବୁଡ଼ ହେଲା-କ୍ଷଣି ଗାଈ ନେଇ ଘରକୁ ଆସେ । ଦିନେକର ବୁଢ଼ୀ ଅସୁରୁଣୀ ଆସିଲା କହିଲା ହଇରେ ପୁଅ କିଣ ଖାଉଚୁ କି ? ଗଉଡ଼ଟୋକା କହିଲା ମଣ୍ଡାପିଠା ଖାଉଛି । ଅସୁରୁଣୀ କହିଲା ଅରେ ପୁଅ ମତେ ଗୋଟିଏ ଦିଅନା । ଗଉଡ଼ଟୋକା ମଣ୍ଡାଟିଏ ପକାଇ ଦେଲା । ବୁଢ଼ୀ ଅସୁ-ରୁଣୀ କହିଲା, ଅରେ ପୁଅ ମୋ ହାତକୁ ଗୋଟାଏ ଦେ । ଗଉଡ଼-ଟୋକା ମଣ୍ଡାପିଠାଟିଏ ତା ହାତକୁ ବଢ଼ାଇ ଦଉ ଦଉ ଅସୁରୁଣୀ

କଣକଲା ନା ନେଇଗଲା ଗଉଡ଼ ଟୋକାକୁ, ଗୋଟାଏ ମୁଣିରେ ପୁରାଇଲା, ନେଇ କରି ଗଲା ମୁଣ୍ଡାଇବାକୁ । ଅଧବାଟରେ ଦେଲନ୍ତୁ ବୁଢ଼ୀ ଅସୁରୁଣୀକି ଶୋଷଣ ମାଡ଼ିଲା, ବାଟରେ ଥୋଇ ଦେଲା ମୁଣିଟିକି, ପୋଖରିଗଲା । ଗଉଡ଼ ଟୋକା କଣ କଲା, ମୁଣିକି ଚିରି ଦେଲା, ସେଥିରୁ ବାହାରିଲା, ସେ ମୁଣିରେ ଗୁଡ଼ାଏ ପଙ୍କ ପାଣି କଣ୍ଟା ଏଣୁ ତେଣୁ ପୂରାଇ ଦେଲା, ଘରକୁ ପଳେଇ ଆଇଲା । ବୁଢ଼ୀ ଅସୁରୁଣୀ ଆସିଲା ମୁଣିଟିକି ମୁଣ୍ଡାଇଲା, ନେଇକରି ଗଲା । ବାଟରେ କଣ ହେଉ ଥାଏ ନା ବୁଢ଼ୀଅସୁରୁଣୀ ମୁଣ୍ଡରେ କଣ୍ଟା ଫୋଡ଼ି ହୋଇ ଯାଉ ଥାଏ । ଏ କହୁଥାଏ ଟୋକ ମୁଣ୍ଡପୋଡ଼ା, ଘରକୁ ଗଲେ ତୋ ରଙ୍ଗ ବୁଝିବି । ଏହିପରି ବାଟଯାକ ରଡ଼ିକରି ଯାଉଥାଏ । ଘରକୁ ଗଲା ମୁଣିକି ଦୁମ୍‌କିନା କଚାଡ଼ି ଦେଲା ଫିଟେଇ କରି ଦେଖିଲା । ଦେଖିଲା ବେଳକୁ ଆଉ ଗଉଡ଼ଟୋକା ସେଥିରେ ନାହିଁ, ଏଣୁ ତେଣୁ ଗୁଡ଼ାଏ ପଡ଼ିଛି । ବୁଢ଼ୀ ଅସୁରୁଣୀ କହିଲା ଆରେ ଆରେ ମତେ ଠକି ଦେଇ ଗଲା ବାହାରି, ଆଉ କଣ କରିବି । ଚୁପ ହୋଇ ରହିଲା । ଦି ଚାରି ଦିନ ଛାଡ଼ିଦେଲା, ଫେରି ଗଲା ସେହି ମଣ୍ଡାଗଛ ପାଖକୁ । ଦେଖିଲା ଗଉଡ଼ଟୋକା ଗଛରେ ଚଢ଼ି ମଣ୍ଡା ପିଠା ଖାଉଛି, ବୁଢ଼ୀ ଅସୁରୁଣୀ କହିଲା, ପୁଅରେ ମତେ ଗୋଟିଏ ଦିଅନ୍ତୁ । ଗଉଡ଼ଟୋକା କହିଲା ଆଉ କଣ, ସେ ଦିନତ ଧରିକରି ନେଇ ଗଲୁ, ଆଜି କାହିଁକି ଦେବି ? ତଳେ ପଡ଼ିଛି ଗୋଟେଇକରି ଖାଉନାହୁଁ । ଅସୁରୁଣୀ କହିଲା ନାହିଁରେ ପୁଅ, ସେଦିନ ସିନା ନେଇଗଲି ଆଜି ନେବି ନାହିଁ, ମୋ ହାତକୁ ଗୋଟିଏ ଦେ । ଗଉଡ଼ଟୋକା ପିଠାଟିଏ ତା ହାତକୁ ଦେଲା ବୁଢ଼ୀଅସୁରୁଣୀ କଣକଲା ନା ତା ହାତକୁ ଧରି ତଳକୁ ଓଟାରିଆଣିଲା ଫେରି ମୁଣିରେ ପୂରାଇଲା, ନେଇକରି ଘରକୁ ଗଲା, ଆଉ କେଉଁଠି ଥୋଇଲା ନାହିଁ ବାଟରେ, ବରାବର ଘରକୁ ନେଇଗଲା । ଘରେ ମୁଣିରୁ ବାହାର କରି, ଝିଅକୁ ଡାକି କହିଲା ଝିଅ ଲୋ ମୁଁ ଯାଉଛି

ଗାଧୋଇ, ଯାକୁ ଭଲକରି ଗନ୍ଧବାଡ଼ି ରଖ । ଝିଅ ଗଉଡ଼ଚୋକାକୁ ଏପାଖ ସେପାଖ କରି ଦେଖିଲା, ଦେଖିଲା ତା ମୁଣ୍ଡରେ ବାଳକର ବାଳ । ଅସୁରୁଣୀ ଝିଅ କହିଲା ହଇଲୋ ମୋ ଭାଇ ତୋ ମୁଣ୍ଡରେ ଏତେ ବାଳ କେଉଁଠୁ ହେଲା ? ଏ ଚୋକା ମିଛରେ କହିଲା; ମୋ ମା ମୋ ମୁଣ୍ଡକୁ ଢେଙ୍କିରେ କୁଟିଦିଏ ଯେ ବାଳ ବଢ଼ିଯାଏ । ଅସୁରୁଣୀଝିଅ କହିଲା ତୁ ଟିକଏ ମୋ ମୁଣ୍ଡ ଢେଙ୍କିରେ କୁଟିଦିଅନ୍ତୁ । ଗଉଡ଼ଚୋକା କହିଲା ମୁଁ କଣ ନାହିଁ କରୁଛି ? ଗଉଡ଼ଚୋକା ଢେଙ୍କି ଟେକିଦେଲା, ଅସୁରୁଣୀ ଝିଅ ମୁଣ୍ଡକୁ ଦେଖାଇ ଦେଲାପାଇଁ, ଏ କଣକଲା ଢେଙ୍କିକି ଛାଡ଼ିଦେଲା ଯେ ତା ମୁଣ୍ଡ କୁଟି ହୋଇଗଲା । ଅସୁରୁଣୀଝିଅ ଛଟପଟ ହୋଇ ମରିଗଲା । ସେଇଠୁ, ଗଉଡ଼ଚୋକା ଅସୁରୁଣୀ ଝିଅଠାରେ ଯେତେ ଅଳଙ୍କାର ଥିଲା ତାକୁ ସବୁ ଲଗାଇଲା, ତା ଲୁଗା ପିନ୍ଧିଲା, ତା ବେଶ ଧରି ତାକୁ ଠିକି୨ କରି ବନାଇଲା, ଗନ୍ଧବାଡ଼ି ଥୋଇଦେଲା । ବୁଢ଼ୀ ଅସୁରୁଣୀ ଗାଧୋଇ ଆସିଲାକ୍ଷଣି ତାକୁ ବାଢ଼ିଦେଲା । ସେ ଖାଇ ବସିଲା, ଗଉଡ଼ଚୋକାକୁ କହିଲା ଝିଅ ଲୋ ତୁ ଖାଇ ବସୁନାହୁଁ । ଏ କହିଲା ନାହିଁ ମା ତୁ ଖାଇସାର ମୁଁ ପଛରେ ଖାଇବ । ବୁଢ଼ୀ ଅସୁରୁଣୀ ଖାଇ ସାରିଲା, କହିଲା ଝିଅ ଲୋ ମୋ ମୁଣ୍ଡରୁ ଦଠା, ଉକୁଣୀ ଦେଖନ୍ତୁ, ଗଉଡ଼ଚୋକା ମୁଣ୍ଡ ଦେଖିଲାବେଳକୁ ଯା ମୁଣ୍ଡରେ ଜମା ବାଳ ନାହିଁ ଗୋଟିଏ ବାଳ ଝୁଲୁ୨ ହୋଇ ହଲୁଚି । ଗଉଡ଼ଚୋକା କହିଲା ହଇଲୋ ମା ତୋ ମୁଣ୍ଡରେତ ଜମା ବାଳ ନାହିଁ, ଏ ଗୋଟିକ କାହିଁକି ଅଛି ? ଅସୁରୁଣୀବୁଢ଼ୀ କହିଲା ଆଲୋ ଝିଅ ସେ ବାଳଟିରେ ମୋର ଜୀବନ ଅଛି, ତାକୁ ଛିଣ୍ଡାଇଦେଲେ ମୁଁ ମରିଯିବି । ଗଉଡ଼ଚୋକା ଯା ଯାହା ଶୁଣିଲା, ସେ ବାଳଟିକି ଚୁଟିକରି ଛିଣ୍ଡାଇଦେଲା ଯେ ବୁଢ଼ୀ ଅସୁରୁଣୀ ମରିଗଲା । ଅସୁରୁଣୀକି ପୋଡ଼ାପାଡ଼ି ଦେଇ ଗଉଡ଼ଚୋକା ଘରକୁ ଆଇଲା, ବାପମାଙ୍କ ଆଗେ ସବୁ କଥା କହିଲା । କେତେଦିନ

ଯାଦ୍ ଗଉଡ଼ଠୋକା ବଡ଼ ହେଲା, ସୁଖରେ ଘର ଦୁଆର କଲା, ମୁଁ ଗଳାରୁ କଥା ନ କହିଲା । ମୋ କଥାଟି ସରଲା ଇତ୍ୟାଦି ।



## ଡାଳିମ୍ବକୁମର କଥା ।

ଗୋଟିଏ ରଜାଟିଏ ତାର ଦୁଇ ଭାରିଯା । ତାହାର କିଛି ସନ୍ତାନ ହେଲା ନାହିଁ । ରଜା ଭାରି ଚିନ୍ତା କରୁଥାନ୍ତି, ଖୁବ୍ ଦାନ ଧ୍ୟାନ କରୁଥାନ୍ତି କେମନ୍ତ ଗୋଟିଏ ପୁଅ ହେବ । ଦିନକର ଜଣେ ସନ୍ଧ ପୁରୁଷ ଆସିଲେ, ସେ ପଚାରିଲେ ରଜାଙ୍କର ଏତେ ଦାନ ଧ୍ୟାନ କାହିଁକି ହେଉଛି ? ମନ୍ତ୍ରୀ କହିଲେ ରଜାଙ୍କର କିଛି ପୁଅ ଝିଅ ହେଉନାହିଁ ବୋଲି ଧର୍ମ କରୁଛନ୍ତି । ଏ ବିଧାତା ପୁରୁଷ ଛଦ୍ମବେଶରେ ଆସିଥାନ୍ତି । ସେ ରଜାଙ୍କୁ ଡକାଇଲେ, ତାଙ୍କୁ ଗୋଟିଏ ଡାଳିମ୍ବଟିଏ ଦେଇ କହିଲେ, ଏ ଫଳଟି ନିଅ ତମ ରାଣୀଙ୍କ ଭିତରୁ ଯେ ଆଗେ ଋତୁମତୀ ହେବ, ଋତୁସ୍ନାନଦିନ ତାକୁ ଖାଇବାକୁ ଦେବ ଯେ ସେ ଖାଇ ଗର୍ଭବତୀ ହେବ । କିଛି ଦିନ ଗଲା; ସାନ ରାଣୀର ଆଗେ ଋତୁ ହେଲା । ରଜା ତାକୁ ସେ ଡାଳିମ୍ବ ଫଳଟି ଦେଲେ, ସେ ଖାଇ ଗର୍ଭବତୀ ହେଲା । ବଡ ରାଣୀ ସାନ ରାଣୀକୁ ଜମା ଦେଖିପାରେ ନାହିଁ ତହିଁରେ ଫେର୍ ଏ ଗର୍ଭ ହେବାର ଦେଖି, ଏହାର ହିଂସା ଦ୍ୱିଗୁଣ ବଢିଲା । ଏ ଭାରି ଦୁଃଚିନ୍ତାରେ ଥାଏ କିପରି ସାନ ରାଣୀର ପିଲାକୁ

ନଷ୍ଟ କରିବ । ଦିନେ ବଡରାଣୀ ଧାଈ ହାତରେ ଗୁଡାଏ ଜହରବଣ୍ଟି ଦେଇ ପଠାଇଲା । ଧାଈ ଯାଇ ସାନ ରାଣୀଙ୍କୁ କହିଲା ବଡ ରାଣୀ ମ୍ୟାଙ୍କୁ ଦେଇଛନ୍ତି ତମେ ଖାଇବ । ଏ ନେସହି ସାଧୁଙ୍କ ନାମରେ ତାକୁ ଖାଇଦେଲା; ତାର କିଛି ହେଲା ନାହିଁ । ଦଶମାସଦଶଦିନ ପୂରିଲାରୁ ସାନ ରାଣୀର ଗୋଟିଏ ପୁଅ ହେଲା । ରଜା ବଡ ଖୁସି ହେଲେ ରାଜ୍ୟରେ ଡେଙ୍ଗୁରା ଦିଆଗଲା, ସମସ୍ତେ ଆନନ୍ଦ ଉତ୍ସବ କଲେ । ଷଠୀ ପଞ୍ଚୁଆଡ଼ି ବାରଯାତ୍ରା ଏମାନ ଗଲା, ଏକୋଇଶା ଦିନ ସେ ସିଦ୍ଧପୁରୁଷ ଫେର୍ ଆସିଲେ, ଏ ପୁଅର ନାମ ଡାଳିମ୍ବକୁମର ଦେଇ-ଗଲେ । ସାନରାଣୀକି ଗୋପନରେ କହିଗଲେ ତୋର ପୁଅ ସହ-ଜରେ ମରିବ ନାହିଁ । ତମର ଯେଉଁ ଦାଣ୍ଡ ପୋଖରୀ ଅଛି, ତହିଁରେ ଗୋଟାଏ ରାଘବମାଛ ଅଛି, ତାର ପେଟଭିତରେ ଗୋଟିଏ ଫରୁଆ ଅଛି, ତହିଁରେ ଯେଉଁ ଡାଳିମ୍ବହାର ଅଛି, ଏହାର ଜୀବନ ସେଥିରେ ଅଛି । ସେ ହାରକୁ ଫରୁଆ ଭିତରୁ ବାହାର କରି ଯଦି କେହି-ଲଗାଇବ (୧), ତେବେ ଏ ପୁଅ ମରିବ । ଏହା କହି ସେ ସିଦ୍ଧ ପୁରୁଷ ଗଲେ ବାହାରି । ଡାଳିମ୍ବ କୁମରକୁ ଛ ସାତ ବର୍ଷ ହୋଇଗଲା ପାଠ ହେଉନା ଖୁବ୍ ପଢ଼ିଲା । ତାର ପାଖରେ ବଡ ଶରଧା, ବହୁତ ପାରା ପୋଷିଥାଏ । ପାରାଙ୍କୁ ଚରିବାକୁ ଛାଡଦେଲାବେଳେ, ଦିନେଟା ଗୋଟାଏ ବଡରାଣୀ ଦୁଆରକୁ ଯାନ୍ତି ବାହାରି ଚରିବାକୁ । ବଡରାଣୀ ତାଙ୍କୁ ସବୁ ଧରି ରଖେ, ଏ ମାଗିଲେ ମ୍ୟାଙ୍କୁ କହେ ମା ତୋ ବୋଉକୁ ପଚାରିବୁ ତୋ ଜୀବନ କେଉଁଠି ଅଛି, ବୁଝି ଆସି ମୋତେ କହିବୁ ତେବେ ତୋ ପାରା ଦେବି । ଡାଳିମ୍ବକୁମର ଯାଇ ମାକୁ ପଚାରେ, ତା ଜୀବନ କୋଉଠି ଅଛି, ମା କହେ ତୁ ସେଥିରୁ କଣ ପାଇବୁ ? ଏହିପରି କହି ଭୁଲାଇଦିଏ । ବଡ ରାଣୀ ବ ପରା ଦିଏ

---

୧ । ପିନ୍ଧିବ ।

ନାହିଁ । ଏହିପରି ଗୋଟିଏ ଦେ ଃଟି ରଖୁ ୨ ବଡରାଣୀ ସବୁ ପାସାଯାକ ରଖିଲା । ଏ ମାଗିଲାକୁ କହିଲା ହେ ଜୀବନ କୋଉଠି ଅଛି ନ କହିଲେ ମୁଁ କେବେହେଁ ମାଗ ଦେବି ନାହିଁ । ହେ ବୋଉ ଯଦି ନ କହୁଛ, ତେବେ ତୁ ରୁଷିଲେ ସେ କହିବ । ଏ ଗଲା ସେଦିନ, ଖାଲି ଛଳେ ଡାକିଲା ମା ସଙ୍ଗେ ଏକାଯିଦ୍ କଲା କହ ମୋ ଜୀବନ କୋଉଠି ଅଛି ? ମା କହିଲା ଏ କଥା ତୋତେ କିଏ ଶିଖେଇଛି ? ଏ କହିଲା ମତେ କେହି ଶିଖେଇ ନାହିଁ, ମୁଁ ନିଜେ ଜାଣିବି ମତେ କହ । ଏହିପରି ଲଗାଇ ୨ ମାଠାରୁ ସବୁ ଜାଣିଲା ଯା ଜୀବନ କୋଉଠି ଅଛି ଆସି ବଡରାଣୀ ଆଗରେ ସବୁ କହିଦେଲା । ବଡରାଣୀ ଶୁଣିଲା ଯେତ୍ରୁଁ ସବୁ ପାସା ଛାଡିଦେଲା । ତହିଁ ଆର ଦିନ ବଡରାଣୀ ଜଣ କାଲ ଧାଇ ହାତରେ ରଜାଙ୍କ ପାଖକୁ ଖବର ଦେଲା, କହିଲା ରଜାଙ୍କୁ କହିବ, ବଡରାଣୀଙ୍କ ଦେହ ଦୁଃଖ ହୋଇଛି, ଦାଣ୍ଡ ଗାଡ଼ିଆ ମାଛ ମରିବେ, ସେଥିରେ ଯେଉଁ ରାଘବମାଛ ଅଛି ତାକୁ ଖାଇଲେ ତାଙ୍କ ଦେହ ଭଲ ହେବ । ରଜା ତ ଆଉ ଏତେ କଥା ଜାଣନ୍ତି ନାହିଁ । କହିଲେ ହଉ ଜାଲ ପକାଅ । ବଡ ଜାଲ ଥରେ ବୁଲାଇ ଆଣି ଆଉ ଥରେ ବୁଲାଇ ଆଣିଲା କେବଳକୁ ସେହି ରାଘବମାଛ ପଡ଼ିଲା । ତାକୁ ବଡ଼ ରାଣୀଙ୍କ ଉଆସକୁ ନେଇଗଲେ । ବଡ଼ ରାଣୀ ନିଜେ ସେ ମାଛକୁ କେଲେଇ ବସିଲା । ତାକୁ ହଗର (୧) କରି କାଟି ଦେଲା ପେଟକୁ ଚିରି ଦେଇ ହାର ଫରୁଆକୁ କାଢି ରଖିଲା, କହିଲା ନିଅ ଯାକୁ ଭାଙ୍ଗିକୁଟି ତରକାରି କର । ଏ ଫରୁଆରୁ ହାରଟିକି କାଢି ବେକରେ ପକାଇଲା ଯୋଉଠୁ ତେଣେ ଭାଲମ୍ବକୁମରଟି ମରି-ଗଲା । ସାନରାଣୀ କାନ୍ଦି ଉଠିଲା, ଆଉ ସମସ୍ତେ ଯାଇ ଦେଖନ୍ତି ଯେ

---

୧ ଦୁଇଖଣ୍ଡ ।

ଡାଳିମ୍ବକୁମର ମର ପଡ଼ଣ । ରଜା ବଡ଼ ବ୍ୟସ୍ତ ହେଲେ, କହିଲେ କିଏ ତାକୁ ଦାହାକଲା ଏଥି ( ୧ ) ସ୍ୱାମାଗିଥି ନନାନ କାଠକଲ । ସାନ ରାଣୀ କହିଲା ମୋ ପୁଅ ପୋଡ଼ା ହେବ ନାହିଁ କି ପୋତା ହେବ ନାହିଁ, ବନସ୍ତ ଭିତରେ ଗୋଟିଏ ଘର ତୋଳା ହେବ, ସେ ଘରଭିତରେ ସବୁ ଖାଇବା ପଦାର୍ଥ ରହିବ, ସେଠାରେ ନୂଆ ପୋଖରୀ ଖୋଳା ହେବ, ଗୁଆପାଣିଆକ ପାଟଗଛ ବୁଣିବ, ଫୁଲ ବଗିଚା ହେବ ମୋ ପୁଅ ସେଇଥିଭିତରେ ରହିବ । ସବୁ ସେହିପରି ହେଲା । ଡାଳିମ୍ବକୁମରକୁ ନେଇ ସେମାନେ ଷଠସୁନ୍ଧା ( ୨ ) ସେହି ଘରେ ଥୋଇଦେଇ ଅସିଲେ । ଏଥିତେଡ଼ି ବଡ଼ ରାଣୀ କଣ କରେ, ସେ ହାରକୁ ଦିନଯାକ ଲଗାଏ ରାତି ହେଲାକ୍ଷଣି ଥୋଇଦିଏ, ରାଜା ଦେଖିବେ ବୋଲି । ଡାଳିମ୍ବକୁମର ଦିନଯାକ ମରେ, ରାତି ହେଲାରୁ ଜୀଇଁ ଉଠେ । ହାର ଥୋଇଦେଲାକ୍ଷଣି ଉଠି ଖାଏ ପିଏ, ଫୁଲ ବଗିଚାକୁ ଯାଏ ବୁଲେ, ଏହିପରି ରାତିଯାକ କଟେ, ସକାଳ ହେଲାକ୍ଷଣି ମରି ଶୁଏ । ଅରଦେଶ ରାଜା ଝିଅକୁ ବରଘର ଲାଗିଲା, ଯୋଉଠି ଯେତେ ଖୋଜିଲେ କେଉଁଠି ବର ଘଟଣା ହେଲାନାହିଁ । ରାଜା ବଡ଼ ବ୍ୟସ୍ତ ହୋଇ ପଣ୍ଡିତ ମାନଙ୍କୁ ଡ଼କାଇଲେ, ପଚାରିଲେ ତାକୁ କାହିଁକି ବର ମିଳୁ ନାହିଁ । ଏମାନେ ଗଣନା କରି କହିଲେ, ଯେ ଦିନରେ ମରୁଥିବ ରାତିରେ ଜୀଇଥିବ ତାକୁ ସେ ବିବାହ ହେବ । ରାଜା କହିଲେ ଏ ଅଲକ୍ଷଣୀଟାର ମୁହଁ ଚାହିଁ ନା. ଗୋଟାଏ ମଲା ମଣିଷ ବାହା ହେବ, ଏମନ୍ତ ଟୋକାଏ ବର ଫେର କେଉଁଠି ମିଳିବ । ତାକୁ ବାହାର କରିଦିଅ । ସେ ଝିଅକୁ ବାହାର କରି ଦେଲେ । ଝିଅ ବୁଲି ବୁଲି ଅସି ସେହି ବନସ୍ତରେ ଡାଳିମ୍ବକୁମର

---

୧ ଦାହକରିବାକୁ ।   ୨ ଖଣ୍ଡ ମଧ୍ୟରେ ।

ଅଛି, ସେଇଠି ପହଞ୍ଚିଲା ଦେଖିଲା ଯେ ବନସ୍ତ ଭିତରେ ଗୋଟିଏ ଘର ଦିଶୁଛି, ଯାଇଁ ସେ ଫୁଲବଗିଚ୍ଛର ରହିଲା । ଆପଣା ଦୁଃଖରେ କାନ୍ଦୁଥାଏ । ରାତି ହେଲାରୁ ରଜାପୁଅ ଜୀଇ ଉଠିଲା ଗାଧୋଇ ଆସି ରାନ୍ଧିଲାବାଢ଼ିଲା, ଖାଇଲାପିଇଲା, ଫୁଲବାଉକି ଗଲାବେଳକୁ, ଏ ବସି କାନ୍ଦୁଛି । ଡାଲିମ୍ବକୁମର ଯାକୁ ସବୁ ପଚାରିଲା । ଏ କହିଲା ମୁଁ ସେ ଦେଶର ରଜାଝିଅ, ମୋ ଯୋଗୁଁ କରଘର ଲାଗିଥିଲା; ପଣ୍ଡିତମାନେ ଏପରିଯ କହିବାରୁ ବାପା ମତେ ବାହାର କରି ଦେଇଛନ୍ତି । ଡାଲିମ୍ବକୁମର କହିଲା, ତମରବର ମୁଁ, ବଡ଼ାଟା ଘଟଣା କରଛି, ମୁଁ ଦିନରେ ମରେଁ, ରାତିକି ବଞ୍ଚେ । ଏହା କହିଲା, ରଜାଝିଅକୁ ଘରଭିତରକୁ ନେଇଗଲା । ଦିହେଁ ଆନନ୍ଦରେ ରହିଲେ ଖାଇଲେ ପିଇଲେ, ବସିଲେ ଉଠିଲେ । ଦିନକର ରଜାଝିଅ ପଚାରିଲା ଡାଲିମ୍ବକୁମରକୁ ତମେ କାହିଁକି ଏପରି ହୁଅ, ଦିନରେ ମର ରାତିରେ ଜୀଅ । ଏ ଆଦ୍ୟରୁ ଅନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାଝିଅ ଶୁଣି ମନ କଥା ମନେ ରଖିଥାଏ । କେତେଦିନ ଗଲା ଏହାର ଗର୍ଭ ହେଲା ଗୋଟିଏ ପୁଅ ଜନ୍ମ ହେଲା ପୁଅକୁ ଦି ଚାରି ବର୍ଷ ହୋଇଗଲା, ଦିନକର ଏ କଣ କଲା ପୁଅକୁ ବାପ ପାଖରେ ଗୁଡ଼ିଦେଲା, ଗୋଟିଏ ଭଣ୍ଡାରୁଣୀ ବେଶ ଧରି ଟୋକେଇଟିଏ କାଖେଇଲା ଚାରିର ପଚାରିକା ଗଲା ରଜାଘରକୁ । ଆଗେ ସାନରାଣୀ ପାଖକୁ ଗଲା, ତାଙ୍କୁ ଦଣ୍ଡବତ କଲା, ପଚାରିଲା ବଡ଼ରାଣୀ କେଉଁଠି ଅଛନ୍ତି । ସାନରାଣୀର ପୁଅ ମଲାଦିନୁ ମନରେ ଜମା ସୁଖ ନାହିଁ, କହିଲା ସେ ଘରେ କେଉଁଠି ଅଛନ୍ତି ଦେଖ ଏ ଟୋକେଇକା ବଡ଼ରାଣୀଙ୍କ ପାଖକୁ ଗଲା ତାଙ୍କୁ କହିଲା କେତେ ଦିନ ହେଲା ନଖ ତୋଳା ହୋଇ ନାହିଁ ଆସ ତୋଳି ଦେବି ବଡରାଣୀ ପଚାରିଲେ ତୁ କିଏ ? ତୋର ଘର କେଉଁଠି ? ଏ କହିଲା ମୋ ଘର ଏ ଦେଶରେ ନୁହେଁ, ମୁଁ ତମ ଭଣ୍ଡାରୁଣୀର ମଉଳାଣି

ଭଉଣୀ, ଆସ ଜଲଦି ଟେଢଣେ ମୋ ପୁଅ କାନ୍ଦୁଥିବ, ଆସ ଖାଲି ନଖ ତୋଳି ଦେଇ ଯାଉଥିବ, କାଲି ପୁଅକୁ ଘେନିକରି ଆସିବ ସେ ଅଳତା ଲଗାଇ ଦେଇଯିବ । ତର ହୋଇ ନଖ ତୋଳି ଦେଇ ସେ ଦିନ ଗଲା ବାହାର । ତହିଁ ଆରଦିନ ପୁଅକୁ ଘେନି କରି ଆସିଲା । ପୁଅକୁ ଖିଙ୍କେଇଥାଏ, ବଡରାଣୀ ବେକରେ ଯେଉଁ ହାର ଅଛି ମୁଁ ତାକୁ ମାଗିବି ଦେଖିବାକୁ, ସେ ମତେ କାଢିକରି ଦେଖିବାକୁ ଦେବ ଯେତେବେଳେ, ସେତେବେଳେ ତୁ କଣ କରିବୁ ହାରକୁ ଛଡେଇ ନେଇଯିବୁ ମୋ ହାତରୁ ଧରିବୁ, ମୁଁ ତୋହ ହାତରୁ ଅଣିଲାବେଳେକୁ କାନ୍ଦିବୁ ନେ ମୁଁ କହିବି ଥାଉ ପିଲା କାନ୍ଦୁଚି ଅଜି ନେଇ ଯାଉଥାଉ; କାଲି ବୁଝିଦେଲେ ମୁଁ ଦେଇ-ଯିବ । ବଡରାଣୀଙ୍କ ନଖ ତୋଳି ବସିଚି, ବେକକୁ ଅନାଇ ଦେଲା କହିଲା ସାନ୍ତାଣି ଏ ହାର କୋଉଠୁ ଆଣିଥିଲ, ଯ୍ୟାକୁ କୋଉ ଦେଶ-ବଣିଆ ଗଢିଛି ? ଏତ ଆମ ଦେଶ ଗଢାପରି ଦିଶୁ ନାହିଁ । ବଡରାଣୀ କହିଲେ ଯ୍ୟାକୁ ଆମ ବାପ ଘରଅତ ବଣିଆ ଗଢିଛି । ଏ କହିଲା ଦେଖି ସାନ୍ତାଣି ଏ କେମନ୍ତ ? ବଡରାଣୀ ବେକରୁ ବାହାର କରି ଦେଲା । ଏ ଦେଖୁଁ ପୁଅ ଛଡାଇ ନେଇ ଧରିଲା । ଧରିଥାଏ, ଏ ନଖ ତୋଳିସରିଲା, ଅଳତା ଲଗାଇ ଦେଇ ସାରିଲା ପୁଅକୁ କହିଲା ତାଙ୍କ ହାର ଦେ ଆମର ଘରକୁ ଯିବା । ପୁଅ ଆଉ ଛାଡିଲା ନାହିଁ, କାନ୍ଦିକରି ଗଡିଲା । ଏ କହିଲା ଦେଉଚ ନାହିଁ, ମୁଁ ଘରକୁ ନେଇ ଯାଉଚି କାଲି ସକାଳୁ ହାର ଦେଇଯିବ ବୁଝିଗଲେ । ରାଣୀ କହିଲେ ହଉ ନେ ।

ଏ ହାର ନେଇ ଆସିଲା ବାହାରି, ଅଉ ଫେରିଲା ଦେଲା ନାହିଁ । ସେହି ଦିନଠାରୁ ଡାଳିମ୍ବକୁମର ସର୍ବଦା ଜୀଇଲା ଅଉ ମଲା ନାହିଁ । ରାଜାଙ୍କର ମାଳୀ ଯାଏ ସେଠାକୁ ଫୁଲପାଇଁ ସବୁ ଦିନେ, ଯାହା ନିଃଶବ୍ଦ ହୋଇଥିଲା ସେଠାରୁ, ଏବେ ସର୍ବଦା ଖାହୁଳଚହଳ ଲାଗିବାର ଶୁଣିଲା

**ଆସି** ରାଜାଙ୍କୁ କହିଲା ମଣିମା ଗୋଟିଏ କଥା କହିବାକୁ ଭୁଲି ଯାଇ ଥିଲିଟି, ରଜା କହିଲେ କଣ କହ । ମାଳୀ କହିଲା ମଣିମା ବନସ୍ତ ଭିତରେ ଯୋଉ ନଅରରେ ରାଣୀଙ୍କର ଡାଳିମ୍ବକୁମରକୁ ରଖି ଦେଇ ଆସିଥିଲେ ସେଠାକୁ ମୁଁ ଆଗେ ଫୁଲତୋଳି ଯାଉଥିଲି ଯେ ସବୁଦ ନିଃଶବ୍ଦ ଜଣା ଯାଉଥିଲା, ଏବେ କେତେଦିନ ହେଲା ସେଠାରେ ବଡ଼ ଗହଳଚହଳ ଲାଗିଛି । ରଜା କହିଲେ କାଲି ସେ ଅଞ୍ଚଳକୁ ବୁଲିଯିବା ଦେଖି ଆସିବା । ସେ ଦିନ ଚଳି ଗଲା ତହିଁ ଆରଦିନ ରଜା ଗଲେ ସେ ଅଞ୍ଚଳକୁ ବୁଲି । ଡାଳିମ୍ବକୁମର ଘର କବାଟ ପିଟାଇ ଦେଖିଲାବେଳକୁ ଡାଳିମ୍ବକୁମର ଖଟ ଉପରେ ବସିଛି । ତା ଭାରିଯା ତଳେ ବସିଛି, ପୁଅ ଡାଳିମ୍ବକୁମର ପାଖେ ବସିଛି । ରଜା ଦେଖି କାବା ହୋଇଗଲେ, ଡାଳିମ୍ବକୁମରକୁ ସବୁ କଥା ପଚାରିଲେ । ଡାଳିମ୍ବକୁମର ସବୁ କହିଗଲା ବଡ଼ ରାଣୀ ଯାହା କରିଥିଲା ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ରଜାଙ୍କୁ ସବୁ କହିଲା । ସେ ରଜାଝିଅ ଆଉ ପୁଅକୁ ଦେଖି ରଜା ପଚାରିଲେ ଏ ସବୁ କିଏ ? ରଜାଝିଅ କହିଲା ମୁଁ ଆପଣଙ୍କର ବୋହୂ, ଆଉ ଯେତେ କଥା ତା ସମ୍ବନ୍ଧରେ ଘଟିଥିଲା ସବୁ କହିଗଲା, ଭଣ୍ଡାରୁଣୀ ବେଶ ହୋଇ ଯେମନ୍ତ ବଡ଼ ରାଣୀଙ୍କଠାରୁ ହାର ଆଣିଥିଲା ସବୁ କହିଗଲା । ରଜା ପୁଅ ବୋହୂ ନାତି ଦେଖି ବଡ଼ ଖୁସ ହେଲେ ସେମାନଙ୍କୁ ଘରକୁ ନେଇଗଲେ, ଗୋଟାଏ ଗାଡ଼ୀ ଖୋଳାଇ ବଡ଼ ରାଣୀକୁ ତହିଁରେ ପକାଇ ଦେଇ ତଳକଣ୍ଟା ଉପରକଣ୍ଟା ଛାଟି ଦେଲେ । ସାନ ରାଣୀ ପୁଅ ବୋହୂ ନାତି ନେଇ ଘର ଦ୍ୱାର କଲା, ମୁଁ ଗଲାକୁ କଥା କହିଲି ନାହିଁ । ମୋ କଥାଟି ସରିଲା, ଇତ୍ୟାଦି ।






ଗୋଟିଏ ବ୍ରାହ୍ମଣଟିଏ, ଦୁଆର ଓଳାଉ୨ କଲୁରି ମଞ୍ଜିଟିଏ ପାଇଲା । ତାକୁ ପଦାରମୂଳେ ଗୋଟିଏ ଗାଡ଼ି ଖୋଳି ଲଗାଇ ଦେଲା, କହିଲା କାଲିକି ଯେବେ ଉଠିଥିବୁ ତ ଉଠିଥିବୁ, ନଇଲେ ମାମୁଁ ଘର କଟୁରି ଆଣି ହାଣିବି । ସତକୁ ସତ ତହିଁ ଆରଦିନ ଗୋଟିଏ ଗଛ ହେଲା ସେ ଦିନ ସେ କହିଲା, କାଲିକି ଯେବେ ଫୁରି୨ ପତ୍ର ହୋଇଥିବୁ ତ ହୋଇଥିବୁ, ନଇଲେ ମାମୁଁ ଘର କଟୁରିରେ ହାଣିବି । ଯା'ର ସେହିପରି ଫୁରିଟି ପତ୍ର ହେଲା । ସବୁଦିନେ ଏହିପରି କହି୨ ସେ କଲୁରଗଛରେ ଗୋଟିଏ କସି ଧରିଲା । କସିଟି ପାଚିଲା ହେଲା, ଲାଲ ଟହ ଟହ ହୋଇ ପାଚିଲା । ଗୋଟିଏ କାଉ ଆସି କହିଲା ହେ କଲୁରବେଣ୍ଟ ମୁଁ ତତେ ଖାଇବି । କଲୁରବେଣ୍ଟ କହିଲା ତୁ ଥଣ୍ଟ ଧୋଇ ଆ ଯା କି ମତେ ଖାଇବୁ । କାଉ କୂଅ ପାଖକୁ ଗଲା, କହିଲା—

ଦେ କୂଅ ଦେ ପାଣି, ଧୁଅଇଁ ଥଣ୍ଟ
ଧାଇ ଧାଇଁ ଖାଏଁ କଲୁରବେଣ୍ଟ ।

କୂଅ କହିଲା ଯା କୁମ୍ଭାରଘରକୁ କଳଶ ଆଣିବୁ କି ପାଣି କାଢ଼ିବୁ । କାଉ କୁମ୍ଭାର ଘରକୁ ଗଲା କହିଲା—

ଦେ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

କୁମ୍ଭାର କହିଲା, ଯା ବିଲରୁ ମାଟି ଆଣିବୁ କି କଳଶ ଗଢ଼ିଦେବି । କାଉ ବିଲକୁ ଗଲା, କହିଲା—

ଦେ ବଲ ଦେ ମାଟି
ଗଢୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ବଲ କହିଲା, ଯା ହରଣଠାରୁଁ ଶିଙ୍ଘ ଆଣିବୁ କି ମାଟି ଖୋଳିବୁ. କାଉ ହରଣଠାରେ କି ଗଲା, କହିଲା—

ଦେ ହରଣ ଦେ ଶିଙ୍ଘ ଖୋଳଇଁ ମାଟି
ଗଢୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ହରଣ କହିଲା ଯା କାଳୀଗାଈଠାରୁଁ ଦୁଧ ଆଣିବୁକି; ମୁଁ ଖାଇବି ତେବେ ଶିଙ୍ଘ ଦେବି । କାଉ ଗଲା, କହିଲା—

ଦେ କାଳୀଗାଈ ଦେ ଦୁଧ, ଖାଉ ହରଣ ଦେଉ ଶିଙ୍ଘ
ଖୋଳଇଁ ମାଟି
ଗଢୁ କୁମ୍ଭାର କଳଶ ଗୋଟି
କାଢ଼ଇ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

କାଳୀଗାଈ କହିଲା ଯା, ହୁଡ଼ାରୁ ଘାସ ଆଣି ଯା, ମୁଁ ଖାଇବି ଦୁଧ ଦେବି; ଏ ହୁଡ଼ା ପାଖକୁ ଗଲା, କହିଲା—

ଦେ ହୁଡ଼ା ଦେ ଘାସ, ଖାଉ କାଳୀଗାଈ ଦେଉ ଦୁଧ
ଖାଉ ହରଣ ଦେଉ ଶିଙ୍ଘ
ଖୋଳଇଁ ମାଟି
ଗଢୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

ହୁଡ କହିଲା ଯା କମାର ଘରୁ ଦାଆ ଆଣିବୁ କି ଘାସ କାଟିବୁ । କାଉ କମାର ଘରକୁ ଗଲା, କହିଲା—

ଦେ କମାର ଦେ ଦା, କାଟଇଁ ଘାସ
ଖାଉ କାଳୀଗାଈ ଦେଉ ଦୁଧ
ପିଉ ହରଣ ଦେଉ ଶିଙ୍ଘ
ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳସ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

କମାର କହିଲା ବସ୍ ଦାଆ ଗଢ଼ି ଦେଉଛି । କାଉ ବସିଲା, କମାର ଦାଆଟିଏ ଗଢ଼ି ପଚାରିଲା, କେମନ୍ତ ନେବୁ ? କାଉ କହିଲା ମୋ ପିଠିରେ ଦେ, ଏ କହିଲା, ପିଠି ପୋଡ଼ିଯିବ ଆଉ କୋଉଠି ନବୁ ? କାଉ କହିଲା ଥଣ୍ଟରେ ଦେ, ଏ କହିଲା ଥଣ୍ଟ ପୋଡ଼ିଯିବ ଆଉ କୋଉଠି ଦେଖା । କାଉ ବେକ ଦେଖାଇ ଦେଲା, କମାର ଛଡ଼ଲା ଦାଆ ଖଣ୍ଡି କାଉ ବେକରେ ଥୋଇଦେଲା । କାଉର କଲୁରବେଣ୍ଟ ଖାଇବା ଲୋଭ ଲାଗିଛି, ଦାଆଖଣ୍ଡି ବେକରେ ନେଇକରି ଗଲା, ଟିକେ ଦୂର ଯାଇ ଦାଆ ତାତରେ ପୋଡ଼ି ହୋଇ ମରିଗଲା । ଗୋଟିଏ ବୁଢ଼ା ଚଷାଟିଏ ଗୋଟିଏ ବୁଢ଼ୀ ଗୃହିଣୀଟିଏ ଦୋଟି ଯାଉଥିଲେ, ପ ବାଟରେ, ବୁଢ଼ୀ ପାଇଲା କାଉଟିକୁ, ବୁଢ଼ା ପାଇଲା ଦାଆଖଣ୍ଡି । ପଚାରିଲା କାଉଟିକି ଚୂଣ କରି ଖାଇବା, ଘରକୁ ଗଲା, କାଉଟିକି ଥାଟିଲା କୁଟିଲା ଚୂଣ କଲା, ଥୋଇ ଦେଇ ଗାଧୋଇ ଗଲା । ବୁଢ଼ୀ କହିଲା ଦେଖେଁ, ଗୃହେଁ କେମନ୍ତକିସ୍ୱା ଚଟକାଣି ହୋଇଛି ? ଚାଖି ଚୂଡ଼କ୍ ଖାଇଦେଲା । ବଳେଇଠା ମାରି ହାଣ୍ଡିରେ ମୁହଁ ଘଷିଦେଇ ଥଇଠି ପକାଇଦେଲା, ହେଁସଟାଏ ଯୋଡ଼ି ହୋଇ ଶୋଇଲା ଜର, ହେଲାଣି ବୋଲି । ବୁଢ଼ା ଗାଧୋଇ ଆସିଲାବେଳକୁ ବୁଢ଼ୀ କଣ୍ଟୁରି

ବଲ୍ଲଇଟାଏ ମଇ ପଡ଼ିଛି, ହାଣ୍ଡିରେ କିଛି ତୃଣ ନାହିଁ । ବୁଢ଼ା ସବୁ କଥା ବୁଝି ପାରିଲା, ବୁଢ଼ୀକି ଗୋଡ଼ାଏ ଗାଳି ଦେଲା । ବୁଢ଼ୀ ଘଉଡ଼ିବାର ଲୋକ ନୁହେଁ, ଗୁଣ ଜଯୁମ ପକାଇ ବଳେଇର ସବୁ ଦୋଷ ବୋଲି ପ୍ରମାଣ କରିଦେଲା । ବୁଢ଼ା ଥଉ କଣ କରିବ ଭୂନ ହୋଇ ରହିଲା, ଏଣେ କଲୁଷବେଣ୍ଟ କାଉକୁ ଅନାଇ ୨ ଅଭିମାନରେ ତନଫାଳ ହୋଇଗଲା । ମୋ କଥାଟି ସରିଲା; ଫୁଲ ଗଛଟି ଇତ୍ୟାଦି ।



## ଅଜଗର ସାପ କଥା ।

ଗୋଟିଏ ରଜାଟିଏ ଯେ ତ ର ଦୁଇ ଭାରିଯା, ସାନ ରାଣୀର ଗୋଟିଏ ଝିଅ, ବଡରାଣୀର ଗୋଟିଏ ଝିଅ । ରଜା ସାନରାଣୀକି ବହୁ ଦେଖି ପାରନ୍ତି, ବଡ଼ରାଣୀକି ଜମା ଦେଖି ପାରନ୍ତି ନାହିଁ ବଡ଼ରାଣୀକି ଗୋଟିଏ ଅଲଗା ଘର ତୋଳି ଦେଇଥାନ୍ତି, ତାକୁ ରୋଜ୍ ହାଉଟେକିଆ କରି ପଡ଼ି ଦେଉଥାନ୍ତି । ତା ଝିଅକୁ ଧାନଖୋ ଜଗିବାକୁ ପଠାନ୍ତି, ବାଯୁଁ (୧) ଖାଇଯିବେ ବୋଲି । ଝିଅ ନ ଯାଏ କହେ ହୋରେ ବାଯୁଁ ହୋ । ଆର ଦେଶର ରଜା ପୁ ଶାପରେ (୨) ଅଜଗର ସାପ ହୋଇ ସେହି ବନସ୍ତରେ ଥାଏ ରଜାଝିଅ ଯେତେବେଳେ 'ହୋ ରେ ବାଯୁଁ ହୋ' କହି ବାଯୁଁ ହୁରୁ ଡ଼ାଏ, ରଜାପୁଅ ସେତେବେଳେ ଅଜଗର ସାପ ଭିତରେ ଥା କହେ, 'ମାକୁ କହ ଯା ମୁଁ ତମକୁ ବିଭା ହୋ' । ରଜାଝିଅ ସବୁ

(୧) ଏକପ୍ରକାର ଶସ୍ୟହାରୀ ପକ୍ଷୀ (୨) ଅଭିଶାପ ଦ୍ୱାରା ।

ଏହିପରି ଶୁଣେ । ଦିନକର ବଡ଼ରାଣୀଙ୍କ ଆଗେ କହିଲା ବୋଉ, ମୁଁ ଜାଉ ଦ୍ୱାରରେ ବାହା ହେବା, ଏହା ନନ୍ଦ ବାମ୍ବା ହୁଲୁତେ-ଇଲାବେଳକୁ ବଣଭିତରୁ କିଏ ଗୋଟାଏ କହେ 'ମାକୁ ଜାହ ଯା ମୁଁ ତମକୁ ବାହା ହେବି ।' ବଡ଼ ରାଣୀ ଶିଖାଇଦେଲା, ଅଜା ଯେତେବେଳେ ଯେ ଏହା କହିବ ତାକୁ କହିବୁ, 'ତମେ ଯଦି ଆମକୁ ବାହା ହେବ, କାଲି ସକାଳୁ ଆମ ଦାଣ୍ଡଦୁଆରେ ଠିଆ ହେବ ।' ଏତ ଆଉ ଜାଣେ ନା ଅଜଗର ସାପ ବୋଲି, ମା ଯେମନ୍ତ କହିଥିଲା ସେହିପରି କହିଲା ତାକୁ । ତହିଁ ଆରଦିନ ସତ ପାଇନାହିଁ ଅଜଗର ସାପ ଆସି ଦାଣ୍ଡଦୁଆରେ ଗର୍ଜନ କରୁଛି । ସମସ୍ତେ କହିଲେ ଏ କଅଣ ଏ କଅଣ ଅଜଗର ସାପଟାଏ କାହିଁକି ଏମନ୍ତ ଦାଣ୍ଡରେ ରହିଛି । ବୁଝି ବୁଝି ବଡ଼ରାଣୀ କହିଲା ଏମନ୍ତି ମୋ ଝିଅକୁ ବାହା ହେବାକୁ ଆସିଛି । ସମସ୍ତେ ବଡ଼ ଦୁଃଖିତ ହେଲେ, କହିଲେ ସେତେ ସୁନ୍ଦର ଝିଅକୁ ଅଜଗର ମୁହଁରେ ଦେବ । ସାନରାଣୀ କହିଲା କହିବିତ ବାହା କରିବ ନାହିଁ କିଣ ? ଆଜି କିଏ ଅଜଗରକୁ ଫେରାଇ ଦେବ ? ରାଜାଙ୍କ ସେଇଆ କହିଲେ । ବଡ଼ରାଣୀ ଆଉ ତା ଝିଅ କାନ୍ଦୁଥାନ୍ତି, ବାହାଘରର ସବୁ ଆୟୋଜନ ହେଲା, ବେଦୀ, ଛୋଳାହେଲ ସବୁଠାରୁ ସବୁ ହେଲା । ପୁରୋହିତ ଆସିଲେ, ଭଣ୍ଡାରୁଣୀ ଆସିଲା, ଅଜଗର ସାପକୁ ଧରିଆଣି ବେଦୀ ଖୁମ୍ବରେ ବାନ୍ଧିଦେଲେ, ପୁରୋହିତ ମନ୍ତ୍ର ପଢ଼ି ବାହାଘର କରିଦେଲେ । ସବୁ ସରିଲା, ଚତୁର୍ଥୀଦିନ ରାତିରେ ମଧୁ-ଶଯ୍ୟାଘରେ ବିଛଣା କରିଦେଲେ, ଝିଅକୁ ଖଟ ଉପରେ ଶୁଆଇ-ଦେଲେ, ଅଜଗର ସାପକୁ ଖଟ ଗୋଡ଼ରେ ବାନ୍ଧିଦେଲେ, ଆସିଲେ ସମସ୍ତେ ଶୋଇଲେ । ନିଃଶବ୍ଦ ହେଲା ଯୋଉଠୁ, ଏ ରଜାପୁଅ ସାପ-ଖୋଳରୁ ବାହାରିଲା, ବାହାରକୁ ଗଲା । ରଜାଝିଅକୁ ତ ଆଜ ନିଦ ନ ଥାଏ, ରଜାପୁଅ ବାହାରିଗଲା ଯେମନ୍ତ ଖୋଳକୁ ଛାଡ଼ି, ଏ କଅଣ

କଲା ଖୋଳଟିକ ନିଆଁ ଲଗାଇ ପୋଡ଼ିଦେଲା । ରଜାପୁଅ ତେଣୁ ଆସି ଦେଖେ ଯେ ଖୋଳ ପୋଡ଼ିଗଲାଣି କହିଲା, କିକଲ କିକଲ ମୋ ଖୋଳ ପୋଡ଼ି ଦେଲ, ମୋ ଦେହ ପୋଡ଼ୁଛି । ଏ କହିଲା ସେଠାରେ ଚୂଆ ଚନ୍ଦନ ଥୁଆ ହୋଇଛି ବୋଳି ହୋଇପଡ଼, ଦେହ ପୋଡ଼ିବ ନାହିଁ । ରଜାପୁଅ ଚୂଆଚନ୍ଦନରେ ଦେହ ଶୀତଳ କରି ରଜାଝିଅ ପାଖରେ ଖଟଉପରେ ବସିଲା, କଥାବାର୍ତ୍ତା ହେଲେ । ରଜାଝିଅ ପଚାରିଲା ତମେ କାହିଁକି ଅଜଗର ସାପ ହୋଇଥିଲ ? ରଜାପୁଅ କହିଲା ଆମେ ସବୁ ପିଲା ହୋଇଥିଲୁଁ; ଦିନେ ଖେଳୁ ଖେଳୁ ଗୋଟିଏ ବୁଢୀ ସାଙ୍ଗେ ଠାପରା ଲଗାଇଲୁଁ, ସେ ମୋତେ ଶାପ ଦେଲା କି ତୁ ଅଜଗର ସାପ ହୋଇ ଯା । ମୁଁ ତାକୁ ଯେତେ ନେହୁରା ହେଲି, କେବେଁ ମୁକ୍ତ କଲାନାହିଁ, କହିଲା, ଅରଦେଶ ରଜାଝିଅ ଆସିବ ଧାନ ଜଗି ତୁ ତାକୁ ବିଭାହେବୁ, ସେ ତୋ ଖୋଳକୁ ପୋଡ଼ିଦେଲେ ତୁ ଯାଇଁ ମୁକ୍ତହେବୁ । ଏହିପରି କଥାବାର୍ତ୍ତା ହେଉ ହେଉ ରାତି ପାହା ପାହା ହେଲା, ନିଦଲାଗିଗଲା ଶୋଇପଡ଼ିଲେ ଦିନ ପ୍ରହରେ ହୋଇଗଲାଣି, ଆଉ କବାଟ ଫିଟିଲା ନାହିଁ, କବାଟ ଭାଙ୍ଗି ଫିଟାଇଲା ବେଳକୁ ସ୍ତ୍ରୀଙ୍କ ନିଦ ଭାଙ୍ଗିଗଲା, ରଜାପୁଅ ଲାଜରେ ଦାଣ୍ଡକୁ ପଳାଇଲା, ଝିଅ କବାଟ କଣକୁ ଗଲା ବାହାରି । ସମସ୍ତେ କହିଲେ ଦେଖ ବଡ ରାଣୀଝିଅ ଅଜଗର ସାପ ବିଭା ହୋଇଥିଲା, ତା ଭିତରୁ କେମନ୍ତ ସୁନ୍ଦର ରଜାପୁଅ ବାହାରିଲା । ସମସ୍ତେ ଯୋଉଠୁ ଏପରି କହିଲେ ସାନରାଣୀଝିଅ କହିଲା ମୁଁ ଅଜଗର ସାପ ବିଭା ହେବି । ରଜା ନାହିଁ ନାହିଁ ହେଉଥାନ୍ତି, ସାନରାଣୀ କହିଲା ନା ମୋ ଝିଅ ଅଜଗରସାପକୁ ବିଭା ହେବ ତ । ରଜା ନାଗୁରି ହୋଇ ହଁ ଭରିଲେ, ଗଣ୍ଡାଏ କି ପାଞ୍ଚଟା ମଣିଷ ପାହାଡ଼କୁ ଗଲେ, ଗୋଟାଏ ଅଜଗର ସାପ ଧରି ଆଣିଲେ । ସେ ଗର୍ଜ୍ଜନ କରୁଥାଏ ଯେ ଘରଦ୍ୱାର ଭାଙ୍ଗୁଥାଏ । ତାକୁ ଟେକା ଖମ୍ବରେ ବାନ୍ଧିଦେଲେ, ଲଗ୍ନ ଭଗ୍ନ କରି ବିଭା କରିଦେଇ ପୁରୋହିତ ଗଲେ।

ବାହାରି । ରାତକି ଖଟ ଉପରେ ବିଛଣା କରି ଆଣି ଝିଅକୁ ଶୁଆଇ-ଦେଲେ, ଅଜଗରକୁ ଖଟ ଗୋଡ଼ରେ ବାନ୍ଧିଦେଇ ଆସିଲେ । ଧାଈ ଆର ପାଖ ଘରେ ଶୋଇଥାଏ, ରାତି ଅଧ ହେଲାଣି ଅଜଗର ଯେ ଖଟ ଗୋଡ଼ରୁ ବାହାରିଲା, ଖଟଉପରକୁ ଯାଇ ସାନରାଣୀ ଝିଅକୁ ଗୋଡ଼ଆଡ଼ୁ ଗିଳିଲା । ଏ ଡାକିଲା ଧାଈ ଗୋଡ଼ ଗଲା, ଧାଈ ଆର-ଘରୁ କହୁଥାଏ ଜୋଇଁ ଗୋଡ଼ରେ ବଳା ପାହୁଡ଼ ଲଗାଇ ଦେଉ-ଛନ୍ତି, ପାଟି କରୁଛୁ କାହିଁକି ? ଏ କହିଲା ମୋ ଅଣ୍ଟା ଗଲା, ଧାଈ କହିଲା ଜୋଇଁ ଚନ୍ଦ୍ରହାର ଲଗାଇ ଦେଉଛନ୍ତି ନା, ଏ କହିଲା ମୋ ହାତ ଗଲା, ଧାଈ କହିଲା ଜୋଇଁ ଚୁଡ଼ି ଖଡୁ ଲଗାଉଛନ୍ତି, ଏ କହିଲା ମୋ ବେକ ଗଲା ଧାଈ କହିଲା ଜୋଇଁ ଗୁଞ୍ଜପଟି ପିନ୍ଧାଇ ଦେଉଛନ୍ତି । ଏହି-ପରି ସାପ ଗୋଟିକିଯାକ ଗିଳିଦେଇ ଖଟଉପରେ ଥିର ହୋଇ ଶୋଇଲା । ରାତି ପାହିଲା, ଦିନ ଦିପହର ହେଲାଣି, ଅଡ଼ୁ କବାଟ ଫିଟିଲା ନାହିଁ । ସାନରାଣୀ ଖାଲି ଛଟପଟ ହେଉଥାଏ, କେମନ୍ତି ବଡ଼-ରାଣୀ ପରି ଗୋଟିଏ ସୁନ୍ଦର ଜୁଆଁଇ ଦେଖିବ । ବେଳ ଗଡ଼ିଗଲା ଯୋଉଠୁ, କବାଟ ଭାଙ୍ଗି ଘରେ ପଶିଲେ, ଦେଖିଲେ ବେଳକୁ ଝିଅ ନାହିଁ, ଅଜଗର ସାପ ସେଇଟା ଝିଅକୁ ଗିଳିଦେଇ କରି । ଯୋଉଠୁ, ସମସ୍ତେ ଗଦା ହୋଇ ପଶିଲେ ଦେଖିବାକୁ, ଅଜଗର ସାପ ଗୋଟାଏ ଗର୍ଜନ ଗୁଡ଼ି ସମସ୍ତଙ୍କୁ ମାଡ଼ିଦେଇ ପାହାଡକୁ ପଳାଇଗଲା । ସାନରାଣୀ କାନ୍ଦି ବୋବାଇ ରହିଲା । ବଡ଼ରାଣୀ ଝିଅଜୋଇଁ ଘେନି ସୁଖରେ ହସିଖେଳି ଘରଦୁଆର କଲା, ମୁଁ ଗଲିରୁ କଥା କହିଲି ନାହିଁ । ମୋ କଥା ସରିଲା ଇତ୍ୟାଦି ।





## ନେଉଳଭାଇର କଥା ।

ଗୋଟିଏ ସାଧବ ଥାଏ ଯେ ତାର ସାତ ପୁଅ । ସାତବୋହୂ ସଭ ଯାଆ ଯାକ ଗଭ ହୋଇଥାନ୍ତି, ଅମ୍ବକ ସମୟ ହୋଇଛ, ବାହାରକି ଗଲେ ଛ ଯାଆ ଛଅଟି ଭଲ ଅମ୍ବ ପାଇଲେ, ସବା ସାନ ଯା ଗୋଟିଏ ଖଣ୍ଡିଆ ଅମ୍ବ ପାଇଲା । ଯେଝା ଅମ୍ବ ଯେଝା ଖାଇଲେ, ସାନଯା ଅମ୍ବଟି ନେଉଳ ଖାଉଥିଲା; ସାନ ଯା ସେହି ନେଉଳଖଣ୍ଡିଆଟି ଖାଇଲା । ସମସ୍ତଙ୍କ ଦଶ ମାସ ହେଲା, ସମସ୍ତେ କଷ୍ଟ ପାଇଲେ, ପୁଅ ଜନ୍ମ କଲେ, ସାନ ଯା ଗୋଟିଏ ନେଉଳ ଜନ୍ମ କଲା । ସାନ ଯାଟି କାନ୍ଦୁଣୀ ମାନ୍ଦୁଣୀ ହେଉଛ-ଥାଏ । ସମସ୍ତେ କହିଲେ ଏ କାହିଁକି ନେଉଳ ଜନ୍ମ କଲା ? ଛଅଯା ଯାକ କହିଲେ, ଆମେ ସବୁ ଅମ୍ବଗଛ ମୂଳକୁ ଯାଇଥିଲୁଁ, ଆମେ ଛଅଟି ଭଲ ଅମ୍ବ ପାଇ ଖାଇଲୁ, ସେ ଗୋଟିଏ ଖଣ୍ଡିଆ ଅମ୍ବ ପାଇଖାଇଲା । ତାକୁ ନେଉଳ ଖାଇଥିଲା, ଏ ସେହି ନେଉଳ ଜନ୍ମ କଲା । ଷଠୀ ପହୁଅଁତ ସାତପାଣି ବୁଡ଼ ସବୁ ସରିଲା । ଗଲା କିଛି ଦିନ, ପୁଅମାନେ ପାଠ ପଢ଼ିଲେ, ଘୋଡ଼ା ଚଢ଼ ଶିଖିଲେ, ସବୁ କଲେ, ନେଉଳଟି ଆଉ କଣ କରିବ ? ତା ମା ପାଖରେ ଥାଏ । ଛ ଭାଇଯାକ କହିଲେ, ହେ ଆମର ଖୁଲ ବିଦେଶ କରିଯିବା, ସବୁ ଦିନେ କଣ ଘରେ ବସିଥିବା ? ମା ମାନଙ୍କୁ କହିଲେ, ଘୋଡ଼ାରେ ଚଢ଼ିଗଲେ । ନେଉଳ କହିଲା ଆଲୋ ମା ମୁଁ ଯାନ୍ତି ଭାଇ ମାନଙ୍କ ସାଙ୍ଗେ ? ମା କହିଲା ତୁ କୋଉଠିକି ଯିବୁ ? ତୋତେ କିଏ ମାଡ଼ି ପକାଇବ କି କଅଣ କରିବ, ତୁ କୋଉଠିକି ଯିବୁ ? ନେଉଳ କହିଲା ନାହିଁ ମା ମୁଁ ଯିବି, ମା କହିଲା ହଉ ଯା, ବୁଝି କାହାରି ସଙ୍ଗେ ଖଳବ ଲଗାଇବୁ ନାହିଁ । ମା ହଳଦୀ ଟେକ ଏ

ଚେଲନ୍ତ କଏ ଲଗାଇ ଦେଲା, ଲୁଗା ଖଣ୍ଡେ ଅଣ୍ଟାରେ ଗୁଡାଇଦେଲା, ଗ୍ରାମ୍ଫଦେଲା । ସେ ଛ ଗ୍ରାମମାନଙ୍କ ଦୋ'ଦାନର ମାଉଥାନ୍ତି, ନେଉଳ ଜଣେ ଜଣେ ଯାଉଥାଏ । ବାଟରେ ଗୋଟାଏ ଅମ୍ବଗଛ ଦେଖିଲେ, ତହିଁରେ ଖୁବ୍ ସୁନ୍ଦର ଅମ୍ବ ପାଚିଛି । ଛ ଭାଇଯାକ କହିଲେ ଅହା । ନେଉଳଭାଇଙ୍କ ସାଙ୍ଗରେ ଥିଲେ ଥାନ୍ତେଇଁ କି, ଅମ୍ବ ପାରି ଦେଇଥାନ୍ତା, ଖାଇଥାନ୍ତେଇଁ ସମସ୍ତେ । ନେଉଳ ଜଣଘରୁ ବାହାରି-ପଡ଼ି କହୁଛି, ଆରେ ଭାଇ ! ମୁଁ ଅସିଛି ମୁଁ । ଏସବୁ କହିଲେ ଆରେ ନେଉଳ ଭାଇତ ଅସିଛି । ଦେ ଗଛରେ ଚଢ଼, ଅମ୍ବ ପାର, ଆମକୁ ଦେ । ନେଉଳ ଗଛରେ ଚଢ଼ିଲା, ସବୁ ପାଚିଲା ଭଲ ଅମ୍ବଯାକ ଖାଉଥାଏ, ସେମାନଙ୍କ ପାଇଁ ସବୁ କଷା ଅମ୍ବଯାକ ପକାଉଥାଏ । ଏମାନେ କହୁଥାନ୍ତି ନେଉଳଭାଇ ଦେ ମଁ ଆମକୁ ଭଲ ଅମ୍ବ ? ଏ ଦେଉ ନ ଥାଏ । ଏ ସବୁ କହିଲେ ହଜ ଚନ, ତୁ ତଳକୁ ଆ କି ତୋହର ରଙ୍ଗ ବୁଝାଯିବ । ନେଉଳ ସବୁ ଗଛଯାକ ଅମ୍ବ ଖାଇଲା, ସେମାନଙ୍କୁ ଅଣ୍ଟ ଦେଲା ନାହିଁ କି ତଳକୁ ଅସିଲା ନାହିଁ । ଏମାନେ ଠିଆ ହୋଇଥାନ୍ତି, ନେଉଳ ତଳକୁ ଆସିଲେ ତାକୁ ମାରିବେ ବୋଲି । ନେଉଳ ଗଛରେ ବସି ବସି ବେଳ-ବେଳକେ ତଳକୁ ଅସିଲା । ଏମାନେ କଣ କଲେ ତାକୁ ଗୁଡ଼ାଏ ମାରିଲେ, ସେ ଗଛରେ ବାନ୍ଧି ଦେଲେ, ଗଲେ । ନେଉଳ ଓଟାର ଓଟାର ହୋଇ ସେଥିରୁ ଫିଟିଲା, ତାଙ୍କର ସାଙ୍ଗେ ସାଙ୍ଗେ ଜଣେ ଜଣେ ଗଲା । ସେମାନେ ବାଟରେ ଗୋଟାଏ କାକୁଡଗଛ ଦେଖିଲେ, କହିଲେ ନେଉଳଭାଇ-ଙ୍କ ଶ୍ରଦ୍ଧ ଅନଲେଇଁ, ଥିଲେ ଥାଆନ୍ତେଇଁ, କି ପାଚିଲା କାକଖାଇ ଥାନ୍ତେଇଁ । ଏହା କହିଲାକ୍ଷଣି ନେଉଳ ସେହିପର ବାହାରି ପଡ଼ିଲା କହିଲା ଭାଇ ! ମୁଁ ଅସିଛି । ନେଉଳ ସେହିପର ଗଛରେ ଚଢ଼ିଯାଇ ନାଡ ଖାଉଥାଏ, ମଞ୍ଜିଚକ ଫୋପାଡୁଥାଏ । ସେମାନେ ସେହିପରି କହିଲେ, ତଳକୁ ଆସିଲାକ୍ଷଣି ନେଉଳକୁ ଗୁଡ଼ାଏ ବାଡେଇଲେ, ସେ

ଗଛରେ ବାନ୍ଧି ଦେଇ ଚାଲିଗଲେ । ଏହିପରି ବାଟରେ ଯେଉଁଠି ଗଛ ଦେଖନ୍ତି ସେହିପରି କରୁଥାନ୍ତି, ନେଉଳକୁ ଖୋଜନ୍ତି । ନେଉଳ ଯାଏ, ଫେରେ, ନେଉଳ ସେହିପରି କଲାବେଳକୁ ଗଛରେ ତାକୁ ବାନ୍ଧି ଦିଅନ୍ତି, ଯାଆନ୍ତି । ଏହିପରି ଯାଇଁ ୨ ଆନଦେଶ ରଜାଗାଁରେ ପହଞ୍ଚିଲେ । ରଜାଘରେ ଏ ଛଅ ଭାଇଯାକ ରହିଲେ, ନେଉଳଟି ଗୋଟିଏ ରାଣ୍ଡୀ ବ୍ରାହ୍ମଣୀ ଘରେ ରହିଲା । ରାଣ୍ଡୀ ବ୍ରାହ୍ମଣୀର କେହି ନ ଥାନ୍ତି, ଖାଲି ଦଶ ବର୍ଷର ପୁଅଟିଏ ଥାଏ । ନେଉଳ କହିଲା ମାଉସି, ମୁଁ ତୋ ଘରେ ଚାକର ରହନ୍ତି ? ରାଣ୍ଡୀ ବ୍ରାହ୍ମଣୀ କହିଲା ତୁ ଗୋଟାଏ କଣ ଚାକର କରିବୁ ? ନେଉଳ କହିଲା, ମୁଁ ତୋର ସବୁ କାମ କରିବି, ତୁ ମତେ ରଖ । ରାଣ୍ଡୀ ବ୍ରାହ୍ମଣୀ କହିଲା ହଉ ତେବେ ରହ । ନେଉଳ ରହିଲା, ସବୁ କାମ କରୁଥାଏ, ସେ ପୁଅକୁ ଯେତେବେଳେ ହାଟଗଲ ନିଏ, ଏ ତେତେବେଳେ କଣ କଡ଼ରେ ପୁଅ ଗାଣ୍ଠିକି କାମୁଡ଼ିଦିଏ ସେ ପୁଅ କାନ୍ଦେ । କାନ୍ଦେ ଯେଉଁଠୁ ନେଉଳଭାଇ କହେ କାହିଁକି କାନ୍ଦୁଚୁ ? ପୁଅ କହେ ତୁ ମତେ କାମୁଡ଼ୁଚୁ । ନେଉଳଭାଇ କହେ ମୁଁ ତତେ ଆଉ କାମୁଡ଼ିବି ନାହିଁ, ତୁ କହ ମତେ, ତୋ ମା କେଉଁଠି ଟଙ୍କା ରଖିଛି । ପୁଅ କହିଲା ଚୁଲିମୁଣ୍ଡେ ପୋତିଛି । ନେଉଳଭାଇ କଣ କରେ ସଞ୍ଜରେ ତାକୁ ଖୋଳିଲା, ସେ ଟଙ୍କାତକ ନିଏ । ରାଣ୍ଡୀ ବ୍ରାହ୍ମଣୀର ଗୋଟିଏ ବୁଢ଼ୀ ମେଣ୍ଢା ଥାଏ ଯେ ତାକୁ ଗିଳାଉଥାଏ, କାଲେ ହଜି ପକେଇବ ବୋଲି ଘାଣ୍ଟିରେ ଖଣ୍ଡେ ଖୋଳି ମାଡ଼ି ଦେଇଥାଏ । ସେହିପରି ସବୁଦିନେ କରେ । ରାଣ୍ଡୀ ବ୍ରାହ୍ମଣୀର ଯେତେ ଟଙ୍କା ଥିଲା, ସବୁ ତା ପୁଅକୁ ପଚାରି ଖୋଳି ସେ ମେଣ୍ଢାକୁ ଗିଳାଇ ଥାଏ । ଯେଉଁଦିନ ସେ ଛଅ ଭାଇ ଦେଶକୁ ବାହାରିଲେ, ଏ କହିଲା, ମାଉସି ! ମୁଁ ଯିବି ଘରକୁ, ରାଣ୍ଡୀ ବ୍ରାହ୍ମଣୀ କହିଲା, ତୁ ଏତେଦିନ ଥିଲୁ ମୋ ଘରେ, କଣ ନେବୁ କହ । ନେଉଳ ଭାଇ କହିଲା ମୁଁ

କିଛି ନେବ ନାହିଁ, ମତେ ଏ ବୁଢ଼ୀ ମେଣ୍ଢାଟି ଦିଅ । ଟଣ୍ଡୀ ବ୍ରାହ୍ମଣୀ କହିଲା ହଉ ନେ । ନେଉଳଭାଇ ସେହି ବୁଢ଼ୀ ମେଣ୍ଢା ଉପରେ ବସିଲା, ଗଲା । ଏ ଛ ଭାଇ ଯାଉଥାନ୍ତି ଘୋଡ଼ାରେ ଚଢ଼ି, ନେଉଳ ଯାଉଥାଏ ମେଣ୍ଢାରେ ଚଢ଼ି । ଏ ଛ ଭାଇ କହିଲେ କି ରେ ନେଉଳ ଭାଇ ! ଆସିଲୁ କି ? କଣ ଆଣିଚୁ ? ନେଉଳ କହିଲା ମୁଁ ଏହି ବୁଢ଼ୀ ମେଣ୍ଢାଟି ନେଇଚି, ତମେ ସବୁ କଣ ଆଣିଲ ? ଏମାନେ କହିଲେ ଆମେ କିଛି ଆଣିନାହୁଁ । ଏ ଛ ଭାଇ ଘରେ ଆଗରେ ପହଞ୍ଚିଲେ, ନେଉଳର ମା କହିଲା ମୋ ନେଉଳକୁ ଦେଖିଚ ? ଏ ସବୁ ବାଦରେ କହିଲେ, ନାହିଁ ଆମେ ଦେଖି ନାହୁଁ । ଏ ସବୁ ଘରେ ଖାଇପିଇ ଶୋଇଛନ୍ତି, ନେଉଳ ଆସି ପହଞ୍ଚିଲା, ଡାକିଲା ମାଲୋ ! କବାଟ ଫିଟା । ମା ଧଡ଼ପଡ଼ କରି କବାଟ ଫିଟାଇ ଦେଲା, ଏ ବୁଢ଼ୀ ମେଣ୍ଢାଟି ନେଇ ଘରେ ପଶିଲା, ମାକୁ କହିଲା କୁଲାଟାଏ ଆଣିବୁଟି । ଏ କୁଲାଟାଏ ଆଣିଲା । ନେଉଳଭାଇ କଣ କଲା ମେଣ୍ଢା ଗଣ୍ଡିରୁ ଟୋଲ ଖଣ୍ଡ ଫିଟାଇ ଦେଲା; ମେଣ୍ଢା ସବୁ ଟଙ୍କାତକ ଗାଦି ପକାଇଲା । ନେଉଳ ଭାଇ ଗୋଟିଏ ଟଙ୍କା ସେ ମେଣ୍ଢାକୁ ଫେର୍ ଗିଳାଇ ଦେଲା, ଆଉ ଟଙ୍କା ସବୁ ମାକୁ ଦେଲା, କହିଲା ମାଲୋ ମା, ନେ, ଏସବୁ ଗାଢ଼ଅରେ ଧୋଇଆଣି ରଖି ଦେ । ଏ ଧୋଇଧାଇ ରଖି ଦେଲା, ସକାଳୁ ସେ ଛଭାଇଯାକ କହିଲେ, ହଇରେ ନେଉଳଭାଇ ! ତୁ ଏତେ ଟଙ୍କା କେଉଁଠୁ ଆଣିଲୁ ? ନେଉଳ କହିଲା ମୋ ବୁଢ଼ୀ ମେଣ୍ଢା ହଗିଲା । ଏ କହିଲେ କେ, ଆମକୁ ସେ ମେଣ୍ଢାଟିକି ଦିଅନୁ ଟଙ୍କା ନଅନୁ, ନେଉଳଭାଇ କହିଲା, ହଉ ନିଅ, ମତେ ଟଙ୍କା ଦିଅ, ନେଉଳଭାଇ ଟଙ୍କା ଆଣିଲା, ତାଙ୍କୁ ମେଣ୍ଢାଟିକି ଦେଲା । ଏ ନେଇ ସେ ମେଣ୍ଢାକୁ ଖାଢେଇଲେ, ଖାଢେଇ ମେଣ୍ଢା ଗୋଟିଏ ଟଙ୍କା ହଗିଲା, ଆଉ ହଗିଲା ନାହିଁ, ମରିଗଲା । ଏ ଛ ଭାଇ କହିଲେ ରହ ରହ ନେଉଳ

ଭାଇ ! ତୋ ଘର ଯେତେକ ଆସମ ପୋଡ଼ି ନାହିଁ, ତୁ ଆମକୁ ଠକି ଦେଲୁ । ନେଉଳଭାଇ କଣ ଶୁଣିଥାଏ, ଏ ଘର ଯୋଗାଡ଼ିଦେବେ ବୋଲି ସବୁ ଜିନିଷଙ୍କ କୂଅରେ ପକାଇ ଦେଲା । ଶୁନତେହାଲ ମା ପୁଅ ଦୁହେଁ ଲୁଚିକରି ଏଅଡ଼େ ରହିଲେ । ଏ ଛ ଭାଇ କଣ କଲେ ତା ଘରେ ନିଆଁ ଲଗାଇଦେଲେ । ନେଉଳଭାଇ କଣ କରିବ ଲୋଭେ-ଇଛ ପାରିବ ନାହିଁ, ଘର ପୋଡ଼ି ଯେଉଁ ଟୁଙ୍ଗ ପଡ଼ିଲା ନିଆଁରେ ପାଣି ପକାଇ ଲିଭାଇଲା । ଅଙ୍ଗାରଗୁଡ଼ାକ ବାଛିଲା, ବଳଦିଆ ବସ୍ତାଟାଏ ଆଣିଲା, ତାକୁ ସବୁ ତହିଁରେ ପୂରାଇଲା, ବଳଦ ଉପରେ ଲଦି, ନେଇ କରି ଗଲା ବିକିବାକୁ । ଯାଉଛି, ତେଣୁ ବଳଦିଆ ସାହୁଟା ଅସୁଛନ୍ତି ସର୍କାର ଖଜଣାଟଙ୍କା ଘେନି । ନେଉଳଭାଇଙ୍କ କହିଲେ, କରେ କରେ କଣ ନେଉଛୁ କି ? ନେଉଳ କହିଲା ତମେ କଣ ନେଉଛ ? ଏ ସବୁ କହିଲେ ଆମେ ଟଙ୍କାବଳଦ ନେଉଛୁ । ନେଉଳଭାଇ ମିଛରେ କହିଲା ମୁଁ ସେହି ଟଙ୍କାବଳଦ ନେଉଛି । ନେଉଳ କହିଲା ତେବେ ତମେ କୋଉଠିକି ଯାଉଛ ? ଏ ସବୁ କହିଲେ ଆମେ ସର୍କାରକୁ ଯାଉଛୁ । ରାତି ହେଲା ଯୋଉଠୁ ବଳଦିଆମାନେ କହିଲେ ସମସ୍ତେ ଏକାଠାକୁ ଯିବା, ଏଇଠି ଏକାଠେଇଁ ସମସ୍ତେ ରହିଯିବା । ନେଉଳଭାଇ କହିଲା ହଉ ତେବେ ଭଲହେବ । ସମସ୍ତେ ରହିଲେ, ଶୋଷେଇବାସ କଲେ, ଖାଇଲେ ପିଇଲେ ଶୋଇଲେ । ଏ ସବୁଙ୍କୁ ଯୋଉଠୁ ନିଦ ଲାଗିଗଲା ନେଉଳଭାଇ ଉଠିଲା, ସାନ୍ଙ୍କୁ ସବୁ ଡାକେ ୨ ମାରିଦେଲା । ଏ ସବୁ କହିଲେ ଆମେ ଥଇଲିଙ୍କା ଯିବୁ ନାହିଁ, ତୁ ନଇଲେ ଆଗରେ ବାହାରି ଯା । ନେଉଳ କଣ କଲା ଅଙ୍ଗାର ପଟକ ସେମାନଙ୍କର ଗୋଟାଏ ବଳଦ ଉପରେ ଲଦିଦେଲା, ଟଙ୍କା ପଟକ ତା ବଳଦ ଉପରେ ଲଦିଲା, ଘେନି କରି ବାହାରି ଆସିଲା । ଘରକୁ ଅସ କବାଟରେ ମାରିଲା, ମା କବାଟ ଫିଟାଇଲା, ମା ପୁଅ ଦୁହେଁ ଟଙ୍କା ପଟକୁ ଧରାଧରି କରି ନେଇ

ଥୋଇଦେଲେ । ନେଉଳଭାଇ ଘରେ ଶୋଇଥାଏ, ଏଣେ ଏ ବଳଦସବୁ ହୋଇଲେ, ଯାଇ ବଳଦଉପରେ ନେବାନେବାକୁ ଅଙ୍ଗାର-ପଠ ଉଠାଇ ଲାଗିଲେ । ଏମାନେ କହିଲେ ଆରେ ଅରେ ଆମକୁ ନେଉଳ ଠକି ଦେଇ ଗଲା । ବାଟେଯାଇ କଣ୍ଢ଼ ଦେଖିଲେ ରହିଲେ, ଆଉ ନେଉଳକୁ ପାଇଲେ ନାହିଁ । ଗଣ୍ଠି ପାଇଲା, ଏ ଛ ଭାଇ ଉଠିଲେ, କହିଲେ, କିରେ ନେଉଳଭାଇ । କଣ ଆଣିଲୁ ? ନେଉଳଭାଇ କହିଲା ଅଙ୍ଗାର ପଠକୁ ଟଙ୍କା ପଠେ ଆଣିଲି । ଏ ଛ ଭାଇ କହିଲେ ଆମ ଘର ଆମେ ପୋଡ଼ି ଦେବା ଓ ଟଙ୍କା ଆଣିବା, ନେଉଳଭାଇ କହିଲା ପୋଡ଼, ମୁଁ କଣ ତମକୁ ନାହିଁ କରୁଛି ? ଏମାନେ ନିଜ ଘର ସବୁ ପୋଡ଼ିଦେଲେ, ଅଙ୍ଗାର ବାଛି ଛ ପଠ ସଜେଇ କଲେ; ବଳଦ ଉପରେ ଲଦିଲେ, ନେଇକରି ଗଲେ । ନେଉଳଭାଇକି ପଚାରିଲେ ନେଉଳଭାଇ, ତୁ କଣ ହାଙ୍କକରି ବିକ୍ରୀ କଲୁ ? ନେଉଳଭାଇ ମିଛରେ କହିଲା, ମୁଁ କହିଲି ଅଙ୍ଗାର ପଠ କିଏ ନେବ ରେ, ଟଙ୍କା ପଠ କିଏ ଦେବ ରେ ? ଏମାନେ ନେଇ ସେଇଥି ଡାକିଲେ । କିଏ କାହିଁକି ଅଙ୍ଗାର ଗୁଡ଼ାକ ନେବ । ଦିଅଣ ଥଣାକର କଏ କେମନ୍ତ କିଣିଲା, ଆଉ କେହି ନେଲେ ନାହିଁ । ଏମାନେ ଶୂନ ଛ ଦିନ ରହି ଫେରି ଆସିଲେ । ନେଉଳଭାଇ କୋଠା ତୋଳି ଦେଇଛି ତୋଳି ବସିଛି । ଏ ଛ ଭାଇଯାକ କହିଲେ ରହ ରହ, ଆଜି ନେଉଳଭାଇକି ପଠରେ ସିଲେଇ କରି ପାଣିକି ପକେଇ-ଦେବା ଯେ ଏକାବେଳେ ସିଦ୍ଧ । ନେଉଳକୁ ଡାକି ନେଲେ, ଗୋଟାଏ ପଠ ଆଣିଲେ, କହିଲେ ଏଥିରେ ପଶିଲୁ, ଦେଖିବୁ କେତେ ଧାନ ସମେଇବ ? ନେଉଳ ପଶିଲା, ଏମାନେ କାମ କଲେ, ନେଉଳଭାଇ ଯୋଉଠୁ ପଶିଗଲା, ପଠକୁ ସିଲେଇ କରିଦେଲେ, ନଈକି ଫୋପାଡ଼ି ଦେଲେ । ସେଠାରେ ଗୋଟିଏ ଗଉଡ଼ ଗାଈ ଚରଉଥାଏ, ତାକୁ

ଡାକି ନେଉଳଭାଇ କହିଲା, ଦେଖ ମୋତେ ମୋ ଭାଇମାନେ ବଳି କରିବାକୁ ନେଇ ଯାଉଛନ୍ତି, ମୁଁ ଅଇଚ୍ଛିକା ବଳି ହେବିନାହିଁ । ତୁ ମତେ ଏଥିରୁ ବାହାର କରି ଦେ, ତୁ ପଶ ଯେ ତୁ ବଳି ହେବୁ । ଗଉଡ ଆଉ ଏତେ କଥା ଜାଣିଚି, ଗଉଡ଼ ବାହାର କରିଦେଲା ନେଉଳଭାଇକି, ସେଥିରେ ନିଜେ ପଶିଲା । ନେଉଳ କଣ କଲା ଗଉଡ଼କୁ ନଈକି ଫୋପାଡ଼ି ଦେଲା, ତାର ଗାଈ ପଲକ ଘିଡିଲା, ଘରକୁ ଆସିଲା । ଏ ଛଅ ଭାଇଯାକ ଦେଖି କାବା ହୋଇଗଲେ, ପଚାରିଲେ, ହଇରେ ତୁ ଏ ଗାଈ କୋଉଠୁ ଆଣିଲୁ ? ନେଉଳଭାଇ କହିଲା, ତମେତ ମତେ ପାଖରେ ପକେଇଦେଇ ଆସିଲ, ବହୁତ ଦୂରରେ ପକାଇ ଦେଇଥିଲେ ବେଶି ଗାଈ ଆଣିଥାନ୍ତି । ଏମାନେ କହିଲେ ହେ ନେଉଳଭାଇ । ଆମକୁ ତୁ ପଠରେ ପୂରାଇ ନଈକି ଫୋପାଡ଼ି ଦଅନ୍ତୁ ; ନେଉଳଭାଇ କହିଲା ହଉ ପଣ, ମୁଁ କଣ ମନା କରୁଚି ? ଏ ଛଅ ଭାଇ ଯାକ ପଠରେ ପଶିଲେ, ନେଉଳଭାଇ ପଠମୁହ ସିଲେଇ କରିଦେଲା, ନଈରେ ଖୁବ୍ ଦୂରରେ ଫୋପାଡ଼ି ଦେଲା । ଆସ ଏ ଛ ମା ଯାକଙ୍କୁ ନେଇ ଘରେ ରହିଲା, ବଳି ହେଲା, ଘର ଦୁଆର କଲା ଖୁବ୍ ସୁଖରେ ରହିଲା, ମୁଁ ଚଲାରୁ କଥା ନ କହିଲା । ମୋ କଥାଟି ସରିଲା ଇତ୍ୟାଦି ।



# ଅନନ୍ତା କଥା ।

ଗୋଟିଏ ଚଷା ଘରେ ମା, ବାପ, ପୁଅ ଝିଅ ଚାରିଗୋଟି ଲୋକ ଥାନ୍ତି । ଝିଅଟି ବାହା ହୋଇଗଲା ଗୋଟିଏ ଖୁବ୍ ଧନବନ୍ତ ଘରେ, ବାପଟି ମରିଗଲା । ଏ ମା ପୁଅ ଦୋହିଁ ଭାରି କଷ୍ଟରେ ଥାନ୍ତି, ସେଠିକା ଗାଁର ଘର ମୂଲ ଆଣି ଚଳନ୍ତି । ପୁଅଟି ନା ଅନନ୍ତା । ଭଉଣୀଘରେ ବାହାଘର ହେଉଥିଲା, ଅନନ୍ତା କହିଲା, ମା ! ନାନୀଘରେ ବାହାଘର ହେଉଛି, ମୁଁ ଯାନ୍ତି ଦେଖିବାକୁ ? ମା କହିଲା ହେଉ ଯା । ଅନନ୍ତା ଗଲା ଭଉଣୀ ଘରକୁ, ଯାଇ ସନ୍ଧ୍ୟାବେଳେ ପହଞ୍ଚିଲା । ଭଣେଇ ଦେଖିଲା, କହିଲା ଅନନ୍ତ ଆସିଛ କି ? ହଉ ତେବେ ଏ ଖଳାପତ୍ର ହାଣ୍ଡି ସିଇଁ ଦିଅ, ଏହା କହି ହାଟବାଟି ପଥର ଦେଇଗଲା ଖଳ ସିଇଁବାକୁ । ଅନନ୍ତା ଖଳପତ୍ର ସିଇଁ ସିଇଁ ରାତି ପାହାନ୍ତିଆ ହେଲା, ସମସ୍ତେ ଖାଇପିଇ ଶୋଇଲେଣି, ଭଉଣୀର ମନେ ପଡ଼ିଲା ଅନନ୍ତାର ଆସିଛି ଖାଇ ନାହିଁ ! ଏହା କହି ହାଣ୍ଡିଶାଳରେ ହାଣ୍ଡି ଦେଖିଲାବେଳକୁ ହାଣ୍ଡିରେ କିଛି ନାହିଁ, ପେଜମିଶା ତୋରାଣି ଭାତ ଗଣ୍ଡିଏ ରହିଛି । ଡାକିଲା, ଅନନ୍ତା ! ପେଜ ପିଇବୁ ? ଅନନ୍ତା କହିଲା ନାହିଁ ନାନି, କାଲି ସକାଳଯାଏ, ରାତିପାହିଗଲାଣି କାଲି ସକାଳେ ଖାଇବି । ଭଉଣୀ ଫେରିଗଲା ଘରକୁ । କେତେ ସମୟ ପରେ ରାତି ପାହିଲା । ଭଣେଇ ଘରୁ ଉଠି ଆସି ଦେଖେ ଯେ ଅନନ୍ତା ପିଣ୍ଡାରେ ବସିଛି, କହିଲା ଅନନ୍ତ ! ଏ ହାଥୀଖେଣ୍ଡି ନେବଟି, ଘୋଡ଼ାପାଇଁ ଘାସ କେରାଏ ଆଣିବ, ଅନନ୍ତା ହାଥକୁ ଆଣିଲା, ଆସିଲା । ମନେ ମନେ ଭାବିଲା, ମୁଁ ସିନା ଦୁଃଖୀଟିଏ ବୋଲି ମତେ ଏମନ୍ତ କହୁଛନ୍ତି

ବାଟରେ ଦାଆକୁ ଫୋପାଡି ଦେଲା, ଆପଣା ଘରକୁ ଫେରି ଆସିଲା ଆସିଲା, ବାଟରେ ଗୋଟାଏ ମଲା ନାଗସାପ ଦେଖିଲା, କହିଲା ବର୍ଷିଛି ବୋଲି ପିନା ଏତେ ଅପମାନ, ଯାଉଛି ଏ ମଲା ସାପକୁ ନେଇ ସିଝେଇ କରି ଖାଇବି ସେ ମରିବି । ଏହା କହି ସାପଟି ନେଇ ଘରକୁ ଆସିଲା, ମାକୁ କହିଲା, ମା ! ଏଥିକୁ ସିଝା, ଖାଇବା । ମା ସାପକୁ କାଟି କୁଟି ରାନ୍ଧି ରଖିଲା । ଅନନ୍ତା ଗାଧୋଇ ଆସିଲା, ମା ଗଲା ଅନନ୍ତାକୁ ଖାଇବାକୁ ଦେବାକୁ । ହାଣ୍ଡି ଦେଖିଲାବେଳକୁ ସାପସିଝା ନାହିଁ ସୁନା ମୁଣ୍ଡା ମୁଣ୍ଡା ହୋଇ ହାଣ୍ଡିରେ ରହିଛି । ମା ଦେଖି କାବାହୋଇ ଗଲା, ପୁଅକୁ ଦେଖାଇଲା । ପୁଅ କହିଲା ମା ଆମ କପାଳ ଫିଟିଲା ମା ସବୁ ସୁନାଯାକ ରଖିଦେଲା । ଅନନ୍ତା ସେଥିରୁ ଖଣ୍ଡେ ନେଇ ଗଲା, ହାଟରେ ବଜାରର ସବୁ ସରଞ୍ଜାମ ଆଣିଲା । ମା ପୁଅ ହସିଖେଳି ପିଇ ସୁଖରେ ରହିଲେ । ଅନନ୍ତା ଖୁବ୍ ଘରଦ୍ୱାର କଲା । ଗୋଟାଏ ହାତୀ କିଣିଲା, ଭଉଣୀପାଇଁ ସାଜେ ଅଳଙ୍କାର କଲା, ହଟା ସୁନାମୁଦ୍ଦ ରୁପାମୁଦ ତା ପାଇଁ ଗଢ଼ାଇଲା । ଯୋଡ଼ାଏ ଘଣ୍ଟି ଗଢ଼ାଇଲା, ଗୋଟାଏ ଘଣ୍ଟି କହୁଥାଏ, 'ଅନନ୍ତା ପେଜ ପିଇବୁ ଆ' ଆଉ ଗୋଟାଏ କହେ, 'ନାହିଁ ନାହିଁ କାଲି ସକାଳ ଯାଏ' । ଏହିପରି ସବୁକରି ସାରିଲା । ମାକୁ କହିଲା ମା ମୁଁ ଯାଉଛି ନାନୀଘରକୁ । ଅନନ୍ତା ହାତୀ ଉପରେ ବସି, ଅଳଙ୍କାରପେଡ଼ି ସାଙ୍ଗରେ ନେଲା, ସୁନାମୁଦ ରୁପା ମୁଦ ନେଲା, ଘଣ୍ଟି ହଟା ନେଲା, ଗଲା ଭଉଣୀ ଘରକୁ । ଗାଁ ମୁଣ୍ଡରେ ହେଲାରୁ ସେ ଘଣ୍ଟି ଯୋଡ଼ିକ ହାତୀବେକରେ ପକାଇଦେଲା । ଗୋଟାଏଘଣ୍ଟି କହୁ-ଥାଏ 'ଅନନ୍ତା ପେଜ ପିଇବୁ ଆ' ଆଉ ଗୋଟାଏ କହୁଥାଏ 'ନାହିଁ ନାହିଁ କାଲି ସକାଳ ଯାଏ' ଏହିପରି ସେ ଘଣ୍ଟିଯୋଡ଼ାକ ବାଜୁଥାଏ ॥ ଗାଁ ଲୋକେ ଶୁଣି କହିଲେ, ଭଉଣୀ ଭାଇକି ଏହା କହିଥିଲା ବୋଲି ପରା ଭାଇ ଏପରି ଘଣ୍ଟି ବଜାଇ ଆସୁଛି । ଅନନ୍ତ ଭଉଣୀ ଦୁଆରେ

ପହଞ୍ଚିଲା ବେଳକୁ କିଏ ପାଣିଚୋଠା ଧରି ଛିଡ଼ା ହୋଇଛି, କିଏ ହାତଧୁଆ ନେବାକୁ ବସିଛି, କିଏ ବନ୍ଧଣା କରି ଦେଉଛି, ଏହିପରି ସବୁ ହାଜର ଅଛନ୍ତି । ଗୋଡ଼ ଧୋଇ ଦାଣ୍ଡ ଘରକୁ ଗଲାବେଳକୁ ଘରେ ଭାତ ବଢ଼ା ହୋଇଛି, ଭଉଣୀ ଠିଆ ହୋଇଛି । ଅନନ୍ତ ଅଳ- ଙ୍କାର ପେନ୍ଧି ଭଉଣୀ ଆଗରେ ଥୋଇଦେଲା, ତା ପାଖକୁ ଯାଇ ବସିଲା, କହିଲା ଆଉଥରେ ଆସିଥିଲି ଯେ ଉଣୋଇ କହିଲ ଖଲପଢ଼ି ପିଇଁ ! ଭଉଣୀ କହିଲା ନେପଜ ପିଇବୁ ଆ । ଏଥର ସିନା ଧନଦରବ ଅଣିଚି ବୋଲି ଏତେ ଆଦର, ଏହା କହି ସୁନାମୁଦି ରୂପାମୁଦିକି ଭାତରେ ପୋତିଦେଲା କହିଲା 'ଭୁଞ୍ଜ ସୁନା ଭୁଞ୍ଜ ରୂପା' ମୁଁ ଖାଇବି ନାହିଁ । ଏହା କହି ଥାଳୀ ପାଖରୁ ଉଠି ଆସିଲା, ଭଉଣୀକି କହିଲା ତୁ ଏ ଅଡ଼େ ମୁଁ ସେ ଅଡ଼େ; ଏହା କହି ହାତୀରେ ଚଢ଼ି ବାହାରି ଆସିଲା, ଘରେ ପହଞ୍ଚି ସ୍ତ୍ରୀଙ୍କର ଘରଦୁଆର କଲା, ଭଉଣୀଙ୍କ ଆଉ ପଚାରିଲା ନାହିଁ, ମୁଁ ଗଲାକୁ ମନ୍ଦ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।






ଗୋଟିଏ ସାଧବଟିଏ ଥାଇ. ସାତ ପୁଅ ସାତ ବୋହୂ, କାଞ୍ଚନବତୀ ବୋଲି ଗୋଟିଏ ଝିଅ । ଦିନକର ଭାଇମାନେ ମା'କୁ କହିଲେ, ଆଜି କାଞ୍ଚନବତୀ ଶାଗ ଖଟେଇବୁ । ମା କହିଲା ହଉ, କାଞ୍ଚନବତୀକି ଶାଗ ଗୁଡ଼ିଏ ଦେଲା । କହିଲା ଯା ଖରଡ଼ିବୁ, ଭାଇମାନେ କହିଛନ୍ତି ଖାଇ- ବାକୁ । ସେ ଗଲା ଶାଗ ଧୋଇ ପାଣି ଚାଳିକି ଥିଲା, ପୁଦରି ଝାଡ଼ି ଖରଡ଼ିଲା ।

ସବୁ ଭାଇମାନଙ୍କୁ, ମାକୁ, ବାପକୁ ଖାଇବାକୁ ଦେଲା, ସମସ୍ତେ କହିଲେ ଅଜି ଶାଗ ଭଲ ହୋଇଛି, ସାନବୋହୂ କାହିଁକି ଏମନ୍ତ ଅବର୍ଜ୍ଞା କର ଝରଚେଡ଼ ? ଏହାପରି ସାନବୋହୂକୁ ସମସ୍ତେ ନିନ୍ଦା କଲେ । ସାନବୋହୂ ଆଉ କିଛି କହିଲା ନାହିଁ, ରାତିରେ ଯେତେବେଳେ ତାର ସ୍ୱାମୀ ସଙ୍ଗେ ଦେଖା ହେଲା, ଖାଲି କାନ୍ଦିଲା । ସ୍ୱାମୀ ଯେତେ ପଚାରୁଥାଏ କିଛି କହୁ ନ ଥାଏ, କେତେବେଳ ପରେ କହିଲା, ତେବେ ସତ୍ୟ କର ମୁଁ କହିବି । ସେ ସତ୍ୟ କଲା, ସେଉଠୁଁ ତା ଭାରିଜା କହିଲା—କାଞ୍ଚନବତୀ ଯୋଗୁଁ ମୋର ଅଜି ଏତେ ନିନ୍ଦା, ସେ ଯେବେ ଅଜି ଏ ଘରୁ ଯିବ ମୁଁ ତ ଭାତ ଖାଇବି, ନଇଲେ କେବେଁ ଭାତ ଖାଇବି ନାହିଁ । ତାର ବର କହିଲା ହଉ, କାଲି ତାକୁ ନେଇ ମାରିପକାଇବି । ତହୁଁ ଆରଦିନ ସକାଳୁ ସାନଭାଇ କଣ କଲା ଦାଣ୍ଡଦୁଆରୁ ଅଇଲା, କହିଲା ବୋଉ, କାଞ୍ଚନବତୀର ଶଶୁର କହିଛି କାଞ୍ଚନବତୀକି ପଠାଇ ଦେବାକୁ । ମା ଭାରି ସଜିଲ କଲା, ସାନ ଭାଇ ସାଙ୍ଗରେ ଝିଅକୁ ଶାଶୁଘରକୁ ପଠାଇଦେଲା । କାଞ୍ଚନବତୀ ଅଉ ତା ଭାଇ ଯାଉଛନ୍ତି, ବାଟରେ ଗୋଟିଏ ଗାଁ ପାଖରେ କାଞ୍ଚନବତୀକି ତା ଭାଇ କହିଲା, ତୁ ଏଇଠି ବସିଥା, ମୁଁ ଗାଁ ଭିତରୁ ପାଣି ପିଇ ଅସେ । ଏହା କହିଲା, ଗଲା ଯେ ସେ ଅଉ କେତେବେଳଯାଏ ରହିଲା । ଯେ ଯାଉଥାଏ ବାଟରେ କାଞ୍ଚନବତୀ ତାକୁ ପଚାରୁଥାଏ ମୋ ଭାଇକି ଦେଖିଚକି ? ସମସ୍ତେ ନାହିଁ କରୁଥାନ୍ତି, କେତେବେଳେକେ ତାର ଭାଇ ଟେଣ୍ଟ ଗୋଟାଏ ପଠାଣର ପୋଷାକ ପିନ୍ଧି ଖଣ୍ଡା ପଟେ ହାତରେ ଧରି ଟିକାଟାଏ ଖାଇଖାଇକା ଆସିଲା, କାଞ୍ଚନବତୀକି ହାଣି ପକାଇଲା । କାଞ୍ଚନବତୀ ସେଇଠି ଗୋଟିଏ ଆଛ ସୁନ୍ଦର କାଞ୍ଚନଗଛ ହୋଇ ରହିଲା । ତହିଁର କେତେଦିନକେ କାଞ୍ଚନବତୀର ଶଶୁର କାଞ୍ଚନବତୀକି ନେବାକୁ ଆସି ବାଟରେ ସେହି କାଞ୍ଚନଗଛମୂଳେ ବସିଲା । ଶଶୁର ସାଙ୍ଗେ

ଯେଉଁ ବାଳକ ଥିଲା ସେ ଗଛରେ କିମ୍ବୂଦର ଫୁଲଗୁଡ଼ାଏ ଫୁଟିଛି ଦେଖି ଫୁଲଟିଏ ତୋଳିବାକୁ ଯେମନ୍ତ ହାତ ବଢ଼ାଇଛି, ସେ କାଞ୍ଚନଗଛରେ କାଞ୍ଚନବତୀ କହିଲା, ଥିର ୨ କର ତୋଳ ହେ ବାଳକ, ଗଛରୁ ପତର ଝଡ଼େଣି, ମୋର ସାନ ଭାଇ ଖଣ୍ଡାରେ ହାଣିଛ ତାଙ୍କି ମୋ ଦେହ ଥରେଣି । ଗଛଭିତରୁ ଏମନ୍ତ ଶବଦ ବାହାରୁଛି ଶୁଣି ସମସ୍ତେ କାବା ହୋଇଗଲେ ! କାଞ୍ଚନବତୀ ଶଶୁର ଫେର୍ ଖଣ୍ଡବାପାଇଁ ଗଛକୁ ଫୁଲ ତୋଳିବାକୁ ହାତ ବଢ଼ାଇଲା; ସେ ଗଛରୁ ସେହିପରି ଶବଦ ହେଲା-ଥିର ୨ କର ତୋଳ ହେ ଶଶୁର ଗଛରୁ ପତର ଝଡ଼େଣି; ମୋର ସାନଭାଇ ଖଣ୍ଡାରେ ହାଣିଛ ତାଙ୍କି ମୋ ଦେହ ଥରେଣି । ଶଶୁର ମନରେ କେତେ ତୋଳପାଡ଼ କଲା, ଗଲା ତା ଘରକୁ ବୋହୂ ଆଣି-ବାକୁ । ଶଶୁର ଆସି କହିଲା ମୋ ବୋହୂକୁ ପଠାଅ, କାଞ୍ଚନବତୀର ବାପ ମା ଭାଇମାନେ ସମସ୍ତେ କହିଲେ ଆମେ ଝିଅକୁ ତ କୋଉଦିନ ଛାଡ଼ି ଆସିଲୁଣି, ତେମେ ଆଉ ବୋହୂପାଇଁ କଣ ଆସିଛ ? ଶଶୁର କହିଲା ହଉ ତେବେ ଏ ଗଛ ନଈକୁ ଆସିଲ, ଏ ଗଛ କଣ କହୁଛ ? ସମସ୍ତେ ଗଲେ, ଛ ଭାଇ, ଛ ଭାଉଜ, ବାପ, ମା, ସାନ ଭାଇ, ସାନ ଭାଉଜ ଗଲେ ନାହିଁ । ଆଗେ ବାପ ଗଲା ଫୁଲ ତୋଳିବାକୁ, ଗଛ କହିଲା, ଥିର ୨ କର ତୋଳ ହେ ବାପା, ଗଛରୁ ପତର ଝଡ଼େଣି; ତମ ସାନ ପୁଅ ଖଣ୍ଡାରେ ହାଣିଛ ତାଙ୍କି ମୋ ଦେହ ଥରେଣି । ମା, ଆଉ ଭାଇମାନେ ସେହିପରି ଗଲେ, ସେମାନଙ୍କୁ ବି ସେହିପରି କହିଲା । ଜାଣି ପାରିଲେ ଯେ ସାନ ଭାଇ କାଞ୍ଚନବତୀକୁ ସେଠାରେ ମାରି ପକାଇଛି । ମା, ବାପ, ଶଶୁର, ଭାଇ, ଭାଉଜ ସମସ୍ତେ ବସି ସେଠାରେ କାନ୍ଦିଲେ । ସାତ ଯାଏ କାନ୍ଦୁଥାନ୍ତି, ରାତି ଅଧହେଲାଣି, ଈଶ୍ୱର ପାର୍ବତୀ ଉଡ଼ି ଯାଉଛନ୍ତି, ଏମାନଙ୍କ କାନ୍ଦଣା ଶୁଣି ସେଠାକୁ ଆସିଲେ । ଏମାନଙ୍କୁ ପଚାରିଲେ, ତେମେ ସବୁ କିଏ ? ଭୂତ ନା ପ୍ରେତ ? କାହିଁକି କାନ୍ଦୁଛ ? ଏମାନେ କହିଲେ, ଆମ୍ଭେମାନେ କେହି ନୋହୁ

ଏହି ମଣ୍ଡର ଲୋକ, ଆମର ଗୋଟିଏ ଝିଅ ମର ଗଛ ଦେଉଛି, ଆମେ ତାଉପାଇଁ ଜାଉନୁଁ । ଇୟାଁ ଶୁଣି ରାଜି ହେଲେ ରାଜା, କେଣିକି ମୁଣ୍ଡିବୁଆଁ ଏମାନେ ସେ ଅଡ଼ାକୁ ମୁହିଁ କରି ବସିଲେ । ଈଶ୍ୱର କଣ କଲେ, ଫୁଲ ପାଣି କରି ତନମୂଠା ଛିଞ୍ଚିଦେଲେ ଯେ କାଞ୍ଚନବଛୀ ଜୀଇ ଉଠିଲା । ଶଶୁର ବୋହୂକୁ ଘରକୁ ନେଇଗଲା । ଭାଇ, ଭାଉଜ, ମା, ବାପ ଘରକୁ ଆସିଲେ, ଗୋଟାଏ ଖଣି ଖୋଳଲେ, ସାନ ପୁଅ, ସାନ ବୋହୂକୁ ସେଥିରେ ପେଲଦେଲେ; ତଳକଣ୍ଟା ଉପରକଣ୍ଟା ଗୁଞ୍ଜିଦେଲେ । ନିଶ୍ଚିନ୍ତରେ ଘରଦୁଆର କଲେ । ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।

## ଟକ୍‌ମକ୍ ପାଣି ଚଲନ୍ତ ରାଜା କଥା ।

ଗୋଟିଏ ରଜାଟିଏ, ତାର ସାତ ଭାରିଯା । ରାଜା ଦାନକର ପାରଧିକି ଯାଉଥିଲେ, ପାତ୍ରମନ୍ତ୍ରୀ ସମସ୍ତିଙ୍କି ସାଙ୍ଗରେ ନେଇ ଯାଇଥିଲେ । ଅସୁରୁଣୀ ସାତ ଭଉଣୀ ଯେ, ସାତ ଭଉଣୀଯାକ ଜାଳକାଠିଯା କରି ସବା ସାନ ଭଉଣୀକି ଛଡ଼ି ଦେଇଥିଲେ ଯେ ସେ ଆସି ଗୋଟାଏ ଗଛରେ ଚଢ଼ି କାନ୍ଦୁଥିଲା ବନସ୍ତରେ, ରଜାଙ୍କ ଉପରେ ଲୁହ ପଡ଼ିଲା । ରଜା କହିଲେ ଗଛୁଥିଣି ଅକୁ, ଗଛିବୁଡ, ଆମ ସରସା କି ତମ ସରସା ? ଗଛୁଣିଅ ଗଛିଲା, କହିଲା ଆପଣଙ୍କ ସରସା ହେବ । ରଜା କହିଲେ, ମନ୍ତ୍ରୀଙ୍କି ଯାଅ, ହାତ ଧରିକରି ଆଣ । ମନ୍ତ୍ରୀ ଗଲେ, ହାତଧରିକରି ଆଣିଲେ, ରଜାଙ୍କ ପାଖରେ ଠିଆ କରିଦେଲେ । ରଜା ଅସୁରୁଣୀ କି ପଚାରିଲେ ତୁ କିଏ ? ଏଠାକୁ କାହିଁକି ଆସିଚୁ ? ଅସୁରୁଣୀ ରଜାଙ୍କୁ ଦେଖି ଖୁବ୍

ସୁନ୍ଦର ମୋହିନୀବେଶ ଧରିଲା ରାଜା ସେପରି ଭୁଲିଗଲେ, ଚିତ୍ତରେ କହିଲା ମୁଁ ଅଗଦେଶ ରାଜାର ଝିଅ, ବାଟ ନ ପାଇ ଏଥିକୁ ଆସିଲିଣି । ରାଜା କହିଲେ ଭଲ ହେଲା, କେବେ ତେବେ ତୁମେ ଆମର ପାଟରାଣୀ ହେବ, ରାଜା ତାକୁ ସୁଆଦରେ ବସାଇଲେ, ନେଇକରି ଗଲେ । ତାଁ ଲୋକେ ସବୁ କହିଲେ, ରାଜା ପାରୁଥିଲେ ଯାଇଥିଲେ, କୋଉଠିଏ ନୂଆ ରାଣୀ ଆଣି ଚନ୍ତି, ଏହିପରି କହିଲେ, ଦେଖିକରି ଗଲେ । ରାଜା ଯାକୁ ଅଣି ପାଖରେ ରଖି ବଡ଼ ହେଲେ । ସେ ରାଣୀ ହୋଇ ବଦନ ଗଲା, ସମସ୍ତଙ୍କ ସେପରି ଲେଖା ଭଳି ଦେଖନ୍ତି ତାକୁ ସେହିପରି ଦେଖନ୍ତି । ଏତ ଅସୁରୁଣୀ ହୋଇ, ଏହା ପେଟ ପୂରୁଚି କୋଉଠି ? ଏ କଣ କରେ ରାତିଅଧରେ ସମସ୍ତେ ଯେତେ ଶୋଇପଡ଼ନ୍ତି, ଯାଏ ହାତୀଶାଳକୁ, ହାତୀ ଗୋଟାଏ ଗିଳେ; ଅଶ୍ୱ କୋଉଦିନ ଘୋଡ଼ା, କୋଉଦିନ ଗାଈ; ଏହିପରି ଗୋଟାଏ ଗିଳେ । ଏମନ୍ତ କରୁ କରୁ ଘୋଡ଼ା, ଗାଈ, ହାତୀ ସବୁ ଊଣା ହୋଇଗଲେ । କେହି କିଛି ବୁଝି ପାରନ୍ତି ନାହିଁ, ରାଜା ଖାଲି ଲୋକଙ୍କୁ ମାରନ୍ତି, ଆମର ଗାଈ, ଚୋରୁ, ହାତୀ, ଘୋଡ଼ା କଣ କରୁଛ ବୋଲି । ରାଜାଙ୍କର ଥର ସାତ ଭାରିଯାଙ୍କ ଜାଣିଥାନ୍ତି ସାନରାଣୀ ଖାଉଚି ବୋଲି, ଧରେଇ ଦେଇ ପାରୁ ନ ଥାନ୍ତି ବୋଲି କିଛି ଅଉ କହୁ ନ ଥାନ୍ତି । ଏମାନେ ଦିନେ ଚିଖାଚିଖି ହେଲେ, କହିଲେ ଭଲ ଅମେ ଗୁହାଳରେ ଲୁଚି-ଥିବା, ଏ କେମନ୍ତ ଖାଇବ ଦେଖିବା । ଏ ଯାଇ ଲୁଚିଛନ୍ତି ଗୁହାଳ କଣରେ, ଅସୁରୁଣୀ ଗଲା ଗୁହାଳକୁ, ଏଣିକି ତେଣିକି ଅନାଇ ଗୋଟାଏ ଗାଈ ଫିଟାଇ ଖାଇଗଲା । ଖାଇସାରି ବାହାରିଗଲାବେଳକୁ ଅସୁରୁଣୀର ଏମାନଙ୍କ ଉପରେ ନଜର ପଡ଼ିଗଲା; ଆଗ ବଳାପଣ ଦାଉ ଅଛି ରାଜାଙ୍କୁ କହିଲା ଦେଖିଲଣି ତୁମେ ଡେଙ୍ଗଦେହରଙ୍କୁ କଣ ମାରୁଛ, ତୁମର ତ ଏହିମାନେ ଗୋରୁଗାଈ ଖାଇଯାଉଛନ୍ତି । ରାଜା ଦେଖିଲେ, କହିଲେ ସତେ, ଏହିମାନେ ତ ଖାଉଛନ୍ତି । ଏମାନେ ଚିପି ତ ମନା କଲେ, ରାଜା କ୍ଷମା ମାନିଲେ ନାହିଁ; କହିଲେ ଏମାନଙ୍କୁ

କଣ ଦଣ୍ଡ ହୋଇଥିବ ? ଅସୁରୁଣୀ କହିଲେ ଖୁବ୍ ବଡ଼ ଗୋଟାଏ ଖୋପର ଖୋଳାଅ, ସେଇଥି ଭିତରେ ଏମାନଙ୍କୁ ପକାଇ ଦିଅ, ଆଉ ଏମାନଙ୍କ ଆଖ ଉପୁଡ଼ାଇ ରଖ ଯେ ସେଇଥି ଭିତରେ ପଡ଼ି କୁଆଡ଼େ ଯାଇ ନ ପାରି ମରିଯିବେ । ରାଜା କହିଲେ ହଉ, ଖୁବ୍ ବଡ଼ଖୋପର-ଟାଏ ଖୋଳାହେଲା, ଏମାନଙ୍କ ଆଖି ଖୋଳି ରଖି ସେଇଥି ଭିତରେ ପକାଇଦେଲେ, ଖୋପର ଉପରେ ପଟା ପକାଇ ଦେଇ ମାଟି ଘୋଡ଼ାଇ ଦେଲେ । ଏ ସାତ ସଉତୁଣୀଯାକ ଗର୍ଭ ହୋଇ ଥାନ୍ତି, ସେ ଖୋପରରେ ପଡ଼ି କେତେଦିନ କଷ୍ଟ ସହିଲେ; ଅନ୍ତହୋଇ ବଡ଼ ସଉତୁଣୀର ପୁଅ-ଟିଏ ହେଲା । ସାନ ସଉତୁଣୀକି ଛାଡ଼ି ଆଉ ପାଞ୍ଚ ସଉତୁଣୀ କହିଲେ ହେ ଅଣ ଦେ ପୁଅକୁ, ସମସ୍ତେ ବାଣ୍ଟି କୁଣ୍ଟି ଖାଇ ପେଟଜାଳାନିବା-ରଣ କରିବା, ତୋର ଅଟମ ଖାଇଥିବୁ, ଆମର ହେଲେ ତୁ ଖାଇବୁ । ସାନ ସଉତୁଣୀ ଆଉ କିଛି କହିଲା ନାହିଁ । ବଡ଼ ସଉତୁଣୀ କହିଲା ହଉ, ପୁଅକୁ ସାତଖଣ୍ଡ କରିଦେଲା, ନିଜେ ଖଣ୍ଡେ ଖାଇଲା, ଆଉ ଛଖଣ୍ଡ ଛ'ଜଣକୁ ବାଣ୍ଟି ଦେଲା । ଏ ପାଞ୍ଚ ସଉତୁଣୀ ଖାଇଲେ, ସାନ ସଉତୁଣୀ ଆଉ ଖାଇଲା ନାହିଁ, ରଖିଦେଇ ଥାଏ । ଏହିପରି ଛ ସଉତୁଣୀଙ୍କର ପୁଅ ହେଲା, ସମସ୍ତେ ମାରିକରି ଖାଇ ଦେଲେ ବାଣ୍ଟି କୁଣ୍ଟି କରି, ଆଉ ସାନ ସଉତୁଣୀ ରଖିଥାଏ, ଖାଇ ନ ଥାଏ । ତାର ଯେତେବେଳେ ପୁଅ ହେଲା, ଏ ସବୁ ଲଗାଇଲେ ତୋର ପୁଅକୁ ଦେ ଖାଇବୁଁ, ଏ କହିଲା ତମର ଯାହାକୁ ସବୁ ଦେଇଛ, ତାକୁ ମୁଁ ରଖିଛି, ମୋ ପୁଅକୁ କେହି ଖାଅନା । ଏହିପରି କହି ପୁଅଟିକୁ ରଖିଲା । ସମସ୍ତେ ସେ ପୁଅଟିକୁ ଶରଧା କଲେ, ଆଦର କରି ଦୁଧ ଦେଲେ (୧) ରଖିଲେ ଏ ପୁଅଟିକ ଯୋଉଠୁ ଦଶ ବାର ବରଷ ହୋଇଗଲା, ସେ କହିଲା ତେମେ ସବୁ ଏଠେଇଁ କାହିଁକି ପଡ଼ିଛ ମା,

(୧) ସ୍ତନ୍ୟପାନ କରାଇଲେ ।

ଏମାନେ ସବୁ କହୁଥିଲେ ଅଦାଂଶୁ ପ୍ରାନ୍ତ ପର୍ଯ୍ୟନ୍ତ, ପୁଅ କହିଲା, ତମମାନଙ୍କ ଦୁଃଖ ଦେଖିବ, ତେବେ ତମ୍ଭେମାନେ ମତେ ଉପରକୁ ଉଠାଇ ଦିଅ । ଏମାନେ ଅସୁରୁଣୀ ଭୟରେ ନାହିଁ କରୁଥାନ୍ତି । ପୁଅ ଏକଯିଦ ଲଗାଇଲା ଯୋଉଠୁଁ ଏମାନେ କଣ କଲେ, ତାଉପରେ ତାଉପରେ ହୋଇ ଠିଆ ହେଲେ, ପୁଅକୁ ଉପରକୁ ଉଠାଇ ଦେଲେ । ପୁଅ ଆସିଲା ଉପରକୁ, ସବୁ ଚାକରମାନଙ୍କୁ ପଚାରିଲା ରାଣୀଙ୍କ ଦିଅଁ କେଉଁଠି ? ସମସ୍ତେ ରାଣୀଙ୍କ ଦିଅଁ ଦେଖାଇ ଦେଲେ । ଏ ଯାଇ ଦଣ୍ଡବତ କଲା ଅସୁରୁଣୀକି, କହିଲା ମୋ ମା ମାନଙ୍କ ଆଖି ଦିଅ । ଏ କହିଲା ମୁଁ ଆଖି ଦେଖି ନାହିଁ । ଏ ସେଇଠୁ ରାଜାଙ୍କ ପାଖକୁ ଗଲା, ଦଣ୍ଡବତ କଲା । ଯାକୁ ଯାହିଁ ରାଜା ଜାଣିଲେ ସେଇମାନଙ୍କୁ ଗାଡ଼ିଟରେ ପକାଇଛନ୍ତି, ତାଙ୍କରମାନଙ୍କ ପୁଅ ବୋଲି; ରାଜା କହିଲେ ହଉ ଆମ ପାଖରେ ରହ । ଏ କେତେ ଦିନ ରହିଲା । ଅସୁରୁଣୀର ଖାଲି ଫିକର ଲାଗିଥାଏ କେମନ୍ତ ଯାକୁ ମାରିବ । ଦିନେ ମିଛେଟାରେ ଜର କଲା ବୋଲି ଶୋଇଲା, ରାଜାଙ୍କୁ ଡକାଇପଠାଇ କହିଲା ଆମ ଦେଶରେ ଯେଉଁ ଚଳନ୍ତ ବାଜା, ଝୁମକ ପାଣି ଅଛି ସେ ଯେବେ ଆସିବ ଔଷଧ ହୋଇ ହେବ, ମୁଁ ଖାଇଲେ ଜର ଭଲ ହେବ । ରାଜା ଭାବିଲେ କିଏ ଯିବ ଏ ସବୁ ଆଣିବ ? ଅସୁରୁଣୀ କହିଲା, ସେ କଣ ସହଜ କଥା ? ଯେବେ ସେହି ପୁଅ ଯିବ ଆଣିପାରିବ, ନଇଲେ ଆଉ କେହି ଆଣିପାରିବେ ନାହିଁ । ରାଜା କହିଲେ ହଉ, ପୁଅକୁ କହିଲେ । ପୁଅ କଥଣ କଲା, ରାଜାଙ୍କ ଘୋଡ଼ାଶାଳରୁ ଘୋଡ଼ାଟିଏ ନେଲା, ବାହାରିଲା, ଗଲାବେଳେ ଏ ଅସୁରୁଣୀକି ଦଣ୍ଡବତ କରିବାକୁ ଗଲା । ଅସୁରୁଣୀ ଖଣ୍ଡେ ଭାଷା ଲେଖିଲା ଛଭଉଣୀଙ୍କ ପାଖକୁ, କି ଏ ମୋ ସଉତୁଣୀଙ୍କ ପୁଅଯାଉଛି, ଯାକୁ ଯେପରି ମାରି ଖାଇଦେବ; ଆଉ ଯେମନ୍ତ ଏ ରାଜ୍ୟକୁ ନ ଆସିବ । ଏଡ଼ ପାଟିଭାବରେ ବାନ୍ଧିଥିଲା; ପାଠପଢ଼ି ନାହିଁ

ଭୁଷା କେଉଁଠୁ ପଡ଼ିଚ ? ଭୁଷା ଖଣ୍ଡିକ ଧେନ ଘୋଡ଼ାରେଚଢ଼ି ବାହାରି-ଗଲା । ଅଧବାଟରେ ହେଲାଣି, ଘୋଡ଼ା ଏ ଜନ୍ମଭୂମି ଦେଖିଲା, ତାକୁ କହିଲା ହେ, ଏ ଭୁଷାକୁ ପଢ଼ିଲନ୍ତି, ଏଥିରେ ସବୁ କଥଣ ଲେଖା ହୋଇଛ । ଯାହା ସବୁ ଲେଖା ହୋଇଥିଲା, ଜଉଛଷ ପଢ଼ିଗଲା, ଏ ଶୁଣିଲା, କହିଲା ସେ ଭୁଷାକୁ ଚିରିପକାଅ, ଆଉଖଣ୍ଡେ ଲେଖିଦିଅ ମୋ ପୁଅ ଯାଉଛି, ତାକୁ ଯେପରି କେହି ଅଣହେଳା କରିବ ନାହିଁ; ଜଉଛଷ ଏପରି ଖଣ୍ଡେ ଭୁଷା ଲେଖି ଦେଲା, ଏ ନେଇକରି ଯାଇଁ ଅସୁରଦେଶରେ ପହଞ୍ଚିଲା । ଭୁଷା ଦେଖି ସମସ୍ତେ କହିଲେ, ଆମ ସାନ ଭଉଣୀ ପୁଅ ଆସିଲାଣି । ଏ ସମସ୍ତିଙ୍କି ଦଣ୍ଡବତ କଲା । ତାକୁ ସବୁ ଏମାନେ ଲଟଲ ପକାଇ ଦେଲେ ନାହିଁ । ଭାରି ଯତ୍ନରେ ରଖା-ଇଲେ, ସବୁ ଘରଦ୍ୱାର ଦେଖାଇଦେଲେ; ଏମାନଙ୍କ ଜୀବନ ଯେଉଁ-ଥିରେ ଥିଲା ଓ ମାମା ମାନଙ୍କ ଆଖି ଅସୁରୁଣୀ ବାପଘରକୁ ପଠାଇ-ଦେଇଥିଲା ତାକୁ ସବୁ ଦେଖାଇଲେ । ଏ ପଚାରିଲା ଆଖି କେମନ୍ତ ଲାଗିବ ? ଅସୁରୁଣୀଯାକ କହିଲେ, ଝକ୍‌ମକ୍ ପାଣି ଦେଇ ଲଗାଇ ଦେଲେ ଆଖି ସବୁ ଲାଗିଯିବ । ଏହିପରି ବୁଝାସୁଝା କରି ସାରିଲା, ସେଠାରେ ଦି ଚାରି ଦିନ ରହିଲା; ଦିନେ ଅସୁରୁଣୀଯାକ ଚରିବାକୁ ଯାଇଚନ୍ତି, ଏ କଣ କଲା, ବଗଟମାନଙ୍କ ବେକ ମୋଡ଼ି ଦେଲା ଯେ ଛ ଭଉଣୀଯାକ ସେ ଆଡ଼େ ମରିଗଲେ । ଯୋଉ ଅସୁରୁଣୀ ରାଜାଘରେ ଅଛି ତାର ଜୀବନକୁ ନେଇ ଝକ୍‌ମକ୍ ପାଣି, ଚଳନ୍ତି ବାଜା, ମାମା ମାନଙ୍କ ଆଖି ଧେନ ଘରକୁ ଆସିଲା । ଆସି ରାଜାଙ୍କ ପାଖକୁ ଗଲା, କହିଲା, ତମ ରାଣୀ ପରା ଅସୁରୁଣୀ ନୁହେ ? ତାକୁ ଡାକ, ଦେଖିବ କେତେଘୋଡ଼ା ହାତୀ ଗାଈ ଗୋରୁ ଖାଇଛି । ରାଜା ରାଣୀଙ୍କି ଡକାଇ ପଠାଇଲେ; ଏଣେ ପୁଅ କଣ କରୁଥାଏ, ବଗଟେକକୁ ମୋଡ଼ି ଦେଉଥାଏ, ଯେ ଅସୁରୁଣୀର ବେକ ମୋଡି ହୋଇପଡୁଥାଏ । ଅସୁରୁଣୀ ଆସି ପହଞ୍ଚିଲା, ପୁଅ କହିଲା ଏ ପରା ଅସୁରୁଣୀ ନୁହେ ? ଏହିକ୍ଷଣ ସବୁ ଜଣାଯିବ ।

ଆପଣମାନେ ଏଇଠି ବସନ୍ତୁ, ମୁଁ ଆପଣଙ୍କ ହାତୀ ଘୋଡ଼ା ସବୁ ଏହାଙ୍କଠାରୁ ଅସୁଲ କରି ଦେଉଛି । ଏହାପରେ କହି ଅସୁରୁଣୀଙ୍କୁ ବେଙ୍ଗଟି ଦେଖାଇଦେଲା । ଅସୁରୁଣୀ ବେଙ୍ଗଟିକି ଦେଖି ଲୋଭାଉଥାଏ ମତେ ମୋ ବେଙ୍ଗଟିକି ଦେ, ମୁଁ ତୋର ସବୁ ଦେବି, ପୁଅ ଲଗାଇଥାଏ ସବୁ ଦେଇ ସାରି ମୁଁ ବେଙ୍ଗ ଦେବି । ଅସୁରୁଣୀ ଦାନ୍ତକରି ପକାଇଲା ତମ ହାତୀ ଘୋଡ଼ା ସବୁ ବାହାରିପଡ଼ିଲେ । ଏ ସେଇଠୁ ବେଙ୍ଗଟିକି ମାରିଦେଲା, ଅସୁରୁଣୀ ଛଟପଟ ହୋଇ ମରିଗଲା । ଏମାନଙ୍କୁ ପାଣିରୁ ବାହାର କଲା, ଛିଟ୍‌କ୍‌ ପାଣି ଲଗାଇ ତାଙ୍କ ଅସ୍ଥି ସବୁ ଯୋଡ଼ିଦେଲା । ରାଜା ଆଉ ରାଣୀମାନେ ଖୁବ ସୁଖରେ ରହିଲେ, ଏ ପୁଅକୁ ବାହାଘର କଲେ । ଏ ଆନନ୍ଦରେ ରହି ଘର ଦୁଆର କଲା । ମୁଁ ଗଲିରୁ କଥା ନ କହିଲି । ମୋ କଥାଟି ସରିଲା, ଫୁଲ ଗଛଟି ଇତ୍ୟାଦି ।





## ପକ୍ଷିରାଜ ଘୋଡ଼ା କଥା ।

ଗୋଟିଏ ଚକୁଳିଆ ପଣ୍ଡାଟିଏ ଯେ ତାର ସାତ ଝିଅ । ଚକୁଳିଆ ପଣ୍ଡା ନଅଗାଁ ଗଲେ ଯେତେ, ଛଅଗାଁ ଗଲେ ଯେତେ ଆଣେ, ଭାତ ରନ୍ଧା ହୁଏ ଯେ ଆଉ ଅଣ୍ଟେ ନାହିଁ, ଚକୁଳିଆ ପଣ୍ଡା ଭାରିଯାକୁ ଗାଳି ଦିଏ, କହେ, ଯେତେ ଆଣିଦେଲି ଅଣ୍ଟିଲା ନାହିଁ ଆଉ କଣ କରିବି ? ଭାରିଯା କହେ, ପିଲାଏତ ଖାଇଯାନ୍ତି ମୁଁ କଣ କରିବି । ଚକୁଳିଆ ପଣ୍ଡା କହେ ପିଲାଙ୍କୁ କାହିଁକି ଦେଉ, ନାହିଁ କରି ଦେଉନାହୁଁ ? ଏହାପରେ

ନାଚ କରିବ, ଯାଏ ଭିକ ମାଗି । ଦିନକର ଭାରିଯାକୁ କହିଲା, ଆଜି ପିଠାକର, ଗୁଡ଼ଉଳ ଦେଇଗଲା, ଗାଧୋଇଗଲା । ଭାରିଯା ଚାଉଳ ବାଟି ପିଠା କଲାବେଳକୁ ସାତ ଝିଅଯାକ ଆସିଲେ, କହିଲେ ମା କଣ କରୁଚୁ ଆମକୁ ଦେ । ମା ସାତ ଝିଅଙ୍କୁ ଗୋଟିଏ୨ ଦେଉଁ୨ ସବୁ ସରିଗଲା । ବାପ ପାଇଁ ଆଉ କିଛି ରହିଲା ନାହିଁ । ବାପ ଗାଧୋଇ ଆସିଲା, କହିଲା ପିଠାପଣା କରିଥିଲୁ ଆଣ । ଏ କହିଲା, ପିଠା ନାହିଁ ସରିଗଲାଣି । ପିଲାଏ ଖାଇଗଲେ, ମୁଁ କଣ କରିବି । ବାପ କିଛି ନ କହି ଚୁପ ହୋଇ ରହିଲା । ମନ କଥା ମନରେ ଥାଏ, ଦି ଘଡ଼ି ଗଲା; ଏ ମିଛରେ ଦାଣ୍ଡଆଡକୁ ଯାଇ ଫେରି ଆସି କହିଲା ଅଲୋ ହେ ! ମାମୁଘର କହି ପଠାଇଚ ପିଲାଏ ସବୁ ଯିବେ । ମା କହିଲା, ହଉ ଯାଆନ୍ତୁ, ପିଲାଙ୍କୁ ହଳଦୀ ଟିକିଏ୨ ଲଗାଇ ଦେଲା, କଳା ସିନ୍ଦୂର ଲଗାଇ ଦେଲା, ପେଡ଼ିରୁ ଶାଢ଼ୀ ଖଣ୍ଡେ୨ ବାହାର କରି ପିନ୍ଧାଇଦେଇ ବାପ ସାଙ୍ଗରେ ଛାଡ଼ିଦେଲା । ବାପ ନେଇକରି ଗଲା, ଯାଇ୨ ବଣସ୍ତରେ ଗୋଟାଏ ଅମ୍ବଗଛମୂଳେ ବସାଇଦେଇ କହିଲା ଏଇଠି ବସିଥାଅ, ମୁଁ ପାଣି ପିଇ ଆସେ । ଏହା କହି ବାହାରିଲା, କହିଗଲା ଯାଉଚି, ବାଟରେ ଦେଖିବ ଯେମନ୍ତ ପାଣି ଟୋପା୨ ହୋଇ ପଡ଼ିଥିବ ମନେ କରିବ ବାପ ଜୀଇଚି; ରକତ ଟୋପା୨ ହୋଇ ପଡିଥିଲେ କହିବ ଯେ ବାପ ମଲାଣି । ଏହା କହିଲା, ଗଲା । ଗୋଟାଏ ଚଢ଼ାଇ ମାରି ବାଟରେ ରକତ ଟୋପା୨ କରି ପକାଇ ଘରକୁ ଅସିଲା ବାହାରି । ପିଲାଏ ବସି୨ ଯୋଉଠୁ ବେଶୀ ସମୟ ହେଲା, ଗଲେ ବାଟ ଦେଖିଦେଖିକା । ଦେଖିଲେ ରକତ ପଡ଼ିଚି ଟୋପା୨ ହୋଇ, ମନେ କଲେ ବାପକୁ କିଏ ମାରି ପାରିଲାଣି । ଫେରିକରି ଅସି ସେହି ଅମ୍ବଗଛମୂଳେ ବସିଲେ । କାନ୍ଦୁଥାନ୍ତି, କାନ୍ଦି୨ ରାତି ହେଲା ଯୋଉଠୁ, କହିଲେ ହେ ବୃକ୍ଷରାଜ, ତୁ ଫାଟିଯା; ଅମେ ପଶିଯାଉଁ । ଗଛ ଫାଟିଗଲା, ଏମାନେ ପଶିଗଲେ । ଖାଇବାକୁ ପିଇବାକୁ ନ ପାଇ ଏଥି ଭିତରେ କାନ୍ଦୁଥାନ୍ତି

ସବୁବେଳେ । ଦିନକର ରାଜା ପାରିଧିକି ଆସିଥିଲେ ସେହି ବନସ୍ତକୁ । ଏମାନେ ଗଛ ମୂଳରେ ଗୁଣ୍ଡୁ ଗୁଣ୍ଡୁ ହୋଇ କାନ୍ଦୁଥାନ୍ତି, ମନ୍ତ୍ରୀ ନଜରରେ ଲୁହ ଟୋପାଏ ପଡ଼ିଲା । ମନ୍ତ୍ରୀ କହିଲା, ମହିମା ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି । ରାଜା କହିଲେ କଣ କହୁ ନାହିଁ ? ମନ୍ତ୍ରୀ କହିଲା, ମହିମା ! ଏ ଗଛରେ କିଏ ଅଛି କାନ୍ଦୁଛି ଯେ ଲୁହ ପଡ଼ିଲା ମୋ ଉପରେ । ରାଜା କହିଲେ ଶୃଖୁଣିଆକୁ ଶୃଖୁବୁଝି, ଆମ୍ଭ ଭଲକା କି ତମ ଭଲକା ? ଶୃଖଣିଆ ଶୃଖୁକରି କହିଲା, ନାହିଁ ମହିମା, ଆପଣଙ୍କ ଭରସା (୧) ରାଜା ସେଉଠୁ କହିଲେ, ଅମ୍ଭ ସମନ ଯେବେ, ହାତ ଧରିକରି ଆଣ । ମନ୍ତ୍ରୀ ଯାଇଁ ଦେଖେ ଯେ ପାଞ୍ଚଟି ଝିଅ, ତାଙ୍କୁ ସବୁ ହାତ ଧରିକରି ନେଇ ରାଜାଙ୍କ ପାଖେ ଠିଆ କରାଇ ଦେଲା । ରାଜା ପଚାରିଲେ, ହଇଲୋ ! ତୁମେମାନେ କି ଘର ଝିଅ ? ଏମାନେ କହିଲେ, ଅମ୍ଭେ ଚଉଳିଆ ପଣ୍ଡା ଝିଅ, ଆମକୁ ଏଠେଇଁ ବାପ ଛାଡ଼ି ଦେଇଗଲା, ଏହିପରି ସବୁ କଥା କହିଗଲେ । ରାଜା କହିଲେ ତୁମେ ସବୁ କି କାମ କରିବ ? ଆଗ ବଡ଼କୁ ଡାକିଲେ, ପଚାରିଲେ ତୁ କି କାମ କରିବୁ ? ଏ କହିଲା, ମୁଁ ସବୁ କରିବି—ଗୁଣ୍ଡିଏ ଚାଉଳର ଭାତ ରାନ୍ଧିବି, ସମସ୍ତଙ୍କୁ ଖାଇବାକୁ ଦେବି, ଯାହା ଦେବି, ପଡ଼ିଶା ଦେବି, ବାସି କରିବି ତଥାପି କରିବି । ତାପରେ ଭଉଣୀକି ପଚାରିଲେ, ସେ ସେମିତି କହିଲା—ମୁଁ ବର ଗଣ୍ଡିକି ବାଟିବି, ପିଠା କରିବି, ସମସ୍ତଙ୍କୁ ଖାଇବାକୁ ଦେବି, ଯାହା ଦେବି, ପଡ଼ିଶା ଦେବି, ବାସି କରିବି ତଥାପି କରିବି; ଏହିପରି ଆଉ ୨ ଭଉଣୀମାନେ କହିଲେ । ସବା ସାନ ଭଉଣୀ କହିଲା, ମୁଁ କିଛି କରି ପାରିବି ନାହିଁ—ରାଜାଙ୍କ ପାଟରାଣୀ ହେବି, ରାଜପୁଅ,

---

। ଭରସା, ନିର୍ଭର ।

ସୁନାନାଙ୍କ ଝିଅ ଜନ୍ମ କରିବ । ସେ ଯେପରି କହିଥିଲେ, ରଜା ସେମା-ନଙ୍କୁ ସେହିପରି କାର୍ଯ୍ୟ କଲେ । ସମସ୍ତଙ୍କୁ ନାଥଇକେ ରଖାଇଲେ, ସାନ ଭଉଣୀକି ପାଟରାଣୀ କଲେ, ରଖିଲେ । ଏହିପରି କେତେଦିନ ଗଲା, ପାଟରାଣୀର ଗର୍ଭ ହେଲା । ରଜା ଦରବାରକୁ ଯାନ୍ତି । ସ୍ତ୍ରୀଙ୍କୁ ଖଣ୍ଡେ ଝଞ୍ଜଣୀ ଦେଇଯାନ୍ତି, କହନ୍ତି ଯେ ଯେତେବେଳେ ତୋ ଦେହ ହେବ (୧) ସେତେବେଳେ ଏହାକୁ ବଜାଇବୁ ଯେ ମୁଁ ଆସିବି, କଚେରି ପଛେ ପଡ଼ି ଯାଉଥିବ, ତୋ ଝଞ୍ଜଣୀ ବଜା ଶୁଣିଲେ ମୁଁ ଆସିବି । କବାଟ କିଳି ଦେଇଥିବୁ, ତୋ ଭଉଣୀମାନେ ଯେତେ କବାଟରେ ମାରିବେ, କେବେ କବାଟ ଫିଟାଇବୁ ନାହିଁ । ଦିନେ ଏ କଣ କଲା, ମିଛରେ ଠିକ ଏ ଝଞ୍ଜଣୀ ବଜାଇ ଦେଲା, ଦେହ କିଛି ହେଉ ନ ଥାଏ, ଝଞ୍ଜଣୀ ବଜା ଶୁଣି କରି ରଜା ଆସିଲେ ବାହାର କଚେରି ଭାଙ୍ଗି ଦେଇ । ଆସି ଦେଖି ଲେ ଦେହକୁ ଦେହ କିଛି ହୋଇନାହିଁ । ରଜା ବଡ଼ ବିରକ୍ତ ହେଲେ, ରାଣୀଙ୍କି କହିଗଲେ, ଏଣିକି ତୁ ବଜାଇ ୨ ଥକିବୁ ମୁଁ କେବେ ଆସିବି ନାହିଁ । କିଛି ଦିନ ଗଲା ବାହାରୁ, ଏହା ଦେହ ହେଲା, କବାଟକୁ କିଳି ଦେଇଥାଏ, ଝଞ୍ଜଣୀ ବଜାଉଥାଏ, ବଜାଇ ୨ ଥକିଗଲା, ଆଉ ରଜା ଆସିଲେ ନାହିଁ । ଏ ଛଅ ଭଉଣୀ ଧାଇଁ ଏ ଘରୁ ଗଲେ, କବାଟରେ ମାରିଲେ, କହିଲେ ଆମେ କିଛି କରିବୁଁ ନାହିଁ ତୁ କବାଟ ଫିଟା । କେତେ କରି କହିଲେ, ରାଣୀ କାନ୍ଦୁନ ପକାଇଲେ ଚୋଙ୍ଗ୦, ଏ କବାଟ ଫିଟାଇ ଦେଲା । ଧାଇ ଘର ଭିତରକୁ ପଶିଗଲା, ଶକ୍ତ ଧଇଲା, ଯେତେବେଳକୁ ପୁଅ ଜନ୍ମ ହେବ, ସେତେବେଳେ ବାଣ କଲେ, କହିଲେ ଏ ଗାଁରେ ଅଛୁ ମୁହଁରେ ଅନ୍ଧୁଣି (୨) ଦେବାଇ ଜନ୍ମ କରନ୍ତି, ଏହା କହି ମୁହଁରେ ଅନ୍ଧୁଣି ପକାଇ ଦେଲେ । ପୁଅ ସେପମନ୍ତ ଜନ୍ମ

---

(୧) ପ୍ରସବ ବେଦନା ହେବ ।  (୨) ଚକ୍ଷୁ ଘୋଡ଼ାଇବାର ବସ୍ତ୍ର

ଘୋଷିପଡ଼ିଲା; ଧାଈ ଧଡ଼ପଡ଼ କରି ତାକୁ ନେଇଗଲା, ଖତଗଦାରେ ପୋତିଦେଇ ଆସିଲା, ତାହାଠାରେ କାଠକଣ୍ଢେଇ ସେଠାରେ ପକାଇ ଦେଇ ସାନରାଣୀ ମୁହଁକୁ ଆଣି କଲା, କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛ । ସାନରାଣୀ ଜାଣି ନୋହିବାରୁ ତୁନି ହୋଇ ରହିଲା । ରାଜା ଆସିଲେ, ପଚାରିଲେ କଣ ଜନ୍ମ ହେଲା ? ଏମାନେ ଆଗଭୁର କରି କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛି । ରାଜା କହିଲେ ତେବେ ତା ମୁହଁ ଚାହିଁବି ନା, ତାକୁ ଘୋଡ଼ାଶାଳ ଲଦି ପୋତୁଥ, ତାର ଚୁଡ଼ି କାଟିଦେଇ ଘୋଡ଼ାଶାଳକୁ ପଠାଇ ଦିଅ । ସାନ ରାଣୀର ଚୁଡ଼ି କାଟିଦେଇ ଘୋଡ଼ାଶାଳକୁ ପଠାଇଦେଲେ । ସେ ପୁଅକୁ ଯେତେବେଳେ ଖତଗଦାରେ ପୋତିଦେଲେ, ଆଉକେହି ଦେଖି ନ ଥାଏ, କୁକ୍କୁର ଦେଖିଥାଏ । କୁକ୍କୁର ଗଲା, ପିଲାଟିକି ଖତଗଦାରୁ ବାହାର କଲା, ଆଉ ତାକୁ ଖାଇଲା ନାହିଁ, ଚାଟିଚୁଟି ସଫା କରି ଦୁଧ ପିଆଇଲା, ସେଇ ଖତଗଦାରେ ରଖିଦେଇ ଆସିଲା । କୁକ୍କୁର ଏହିପରି ସବୁ ଦିନେ କରୁଥାଏ, ଏମନ୍ତେ କେତେଦିନ ଗଲା । ଦିନକର ଧାଈ ଦେଖିଲା, ବଡ଼ରାଣୀଙ୍କ ଆଗରେ କହିଲା, ସାନ୍ତାଣି ! ଆମେ ଯେଉଁ ପୁଅଟିକି ଖତଗଦାରେ ପୋତି ଦେଇ ଆସିଥିଲୁଁ, ତାର ପରି ଗୋଟିଏ ପିଲା କୁକ୍କୁର ଖତଗଦାରୁ ବାହାରକରି ଚାଟିଲା, ତାକୁ ଦୁଧ ପିଆଇଲା, ସେଇ ଖତଗଦାରେ ଗୋଡ଼ି ରଖି ଦେଲା, ଆଉ ତାକୁ ଖାଇଲା ନାହିଁ କି କିଛି କଲାନାହିଁ । ବଡରାଣୀ କଣ କଲା, ରାଜାଙ୍କ ପାଖକୁ ଖବର ଦେଲା, କହିଲା ରାଜାଙ୍କୁ କହିବ ବଡ ରାଣୀଙ୍କୁ ଜର କରିଛି, କୁକ୍କୁର ରକ୍ତରେ ଗାଧୋଇଲେ ଜର ଛାଡ଼ିବ । ଧାଈ ଗଲା ରାଜାଙ୍କୁ ସେଇଆ କହିଲା । ରାଜା ମନ ଭୋଳ ଛ, କହିଲେ ହଉ । କୁକ୍କୁର ଏହା ଜାଣିପାରି କୂଅ ପାଖକୁ ଗଲା, ପୁଅଟିକି ପାଣିରେ ପକାଇଦେଲା, କହିଲା ହେ ଗଙ୍ଗାମାତା, ତୁ ଏଇଟିକି ପାଳ, ମତେତ ମାରିବାକୁ କହିଲେଣି । କୂଅଭିତରେ ଗଙ୍ଗାମାତା କଣ

କରନ୍ତି ପୁଅଟିକୁ ଉପରକୁ ଉଠାଇ ଦଅନ୍ତି, ଫେର୍ (୧) ନେଇଯାନ୍ତି, ଏହିପରି ସବୁଦିନେ ଖେଳାଉଥାନ୍ତି, ଦିନେ ମାଳୀ ଦେଖିଲା ମାତ୍ର ବଡ ରାଣୀଙ୍କି କହିଲା, ଆମେ ଯେପରି ପିଲାଟିଏ ଝରକାଦାରେ ଫୋପାଡ଼ି ଦେଇଥିଲୁଁ ସେହିପରି ଗୋଟିଏ ପିଲା କୂଅରେ ଖେଳୁଛି । ବଡରାଣୀ ଶୁଣିଲା, ରାଜାଙ୍କ ପାଖକୁ ଖବର ଦେଇ ପଠାଇଲା ଯେ ବଡ଼ରାଣୀଙ୍କ ଦେହ ବ୍ୟସ୍ତ ଅଛି, କାଲି କୂଅର ପାଣି ବୁହାହେବ, ସେଥିରେ ଯେଉଁ ମାଛ ଅଛି ତାକୁ ଖାଇଲେ ଦେହ ଭଲ ହେବ । ଧାଈ ଗଲା ରାଜାଙ୍କୁ କହିଲା, ରାଜା କହିଲେ ହଉ । ଗଙ୍ଗାମାତା ଶୁଣିଲେ, କାଳୀଗାଈଙ୍କ କହିଲେ ହେ ! ତୁ ଏ ପୁଅଟିକି ରଖ, ଦୁଧ ପିଆଇବୁ, ଖେଳାଇବୁ, ରଖିଥିବୁ । କାଲିଠୁ କୂଅର ପାଣି ବୁହାଯିବ, ମୁଁ ଆଉ କେଉଁଠି ରଖିବି ? କାଳୀଗାଈ ପୁଅଟିକି ନେଇ ରଖିଲା । ତହିଁ ଆରଦିନ କୂଅରୁ ଠିକଣ ଠଉଁ (୨) ପାଣି ବୁହାହେଲା, ଦେଖିଲାବେଳକୁ କିଛି ନାହିଁ । କାଳୀ ଗାଈ କଣ କରେ ଅରଣ୍ୟଭିତରକୁ ଯାଏ ବାହାରି, ପୁଅକୁ ପେଟଭିତରେ ରଖିଥାଏ, ବାହାରକୁ ବାହାର କରେ, ଗୁଡ଼େ, ଖେଳାଏ, ଦୁଧ ପିଆଏ, ଫେର୍ ଗିଳି ଦିଏ, ଚରିବୁଲି କରି ଆସେ । ଏହିପରି ସବୁଦିନ କରୁଥାଏ । କାଳୀ ଗାଈର ଦୁଧ ଊଣା ହେଲା, ଗଉଡ଼କୁ ମାଡ଼ ହେଲା, କାହିଁକି ଦୁଧ ଊଣା ହେଉଛି ବୋଲି, ଗଉଡ଼ କହିଲା ମୁଁ ତ ସବୁଦିନେ ଚରାଇ କରି ଆଣୁଛି, ବାଛୁରିର ଜମା ଦେଖା ପାଉ ନାହିଁ, ଦୁଧ କାହିଁକି କମ୍ ହେଲା ମୁଁ କଣ କରିବି ? ଦିନକରେ ଗଉଡ଼ ଲୁଚିକରି ବସିଲା, ଦେଖେ ଯେ ଗାଈ ଗୋଟିଏ ପିଲା ବାହାର କରି ପେଟଭିତରୁ ଦୁଧ ପିଆଉଛି । ଦୁଧ ପିଆଇ ସାରି ପିଲାଟିକୁ

୧ । ପୁନର୍ବ୍ବାର    ୨ । ସେଠି ପର୍ଯ୍ୟନ୍ତ

ମେର୍ ଗିଳିଦେଲା । ଗଉଡ଼ ଏସବୁ ଦେଖି ଚଉଧୁରାଣୀଙ୍କୁ କହିଲା, ବନ୍ଧ୍ୟାଗାଈଙ୍କର ଲକ୍ଷ୍ମୀ ମାଙ୍କଡ଼ ନେ କାଳୀଗାଈ ତଥା ଦେବ, ତା ମାଂସ ଖାଇଲେ ମୋ ଦେହ ଭଲ ହେବ । କାଳୀଗାଈ ଏହା ଶୁଣି ଘୋଡ଼ାଶାଳକୁ ଗଲା, ପକ୍ଷିରାଜ ଘୋଡ଼ାକୁ କହିଲା ମୁଁ ଏତେଦିନ ଯାଏ ରଖିଥିଲି, ମତେ ତ ମାରିବାକୁ ବସିଲେଣି, ତୁ ମୋତେ ନେ, ଯେଉଁ ଆଡ଼େ ଇଚ୍ଛା ସେଆଡ଼େ ନେଇଯା । ଘୋଡ଼ା ପୁଅକୁ ରଖିଲା, ଉପରେ ବସାଇ ନେଇକରି ଗଲା ବାହାର । ପକ୍ଷିରାଜ ଘୋଡ଼ା ପବନବେଗରେ ଗଲୁଚି, ଯାଉଁ ଯାଉଁ ଗୋଟାଏ ଶୋଳ ପୋଖରୀ ପାଖରେ ବାଘ ଚଢ଼ାଇ ଗୁଡ଼ାଏ ଥଣ୍ଡା ଜଡ଼ୁଥା ହୋଇ ଗଣ୍ଡି ପଡ଼ି ଯାଇଛନ୍ତି, ଫିଟି ପାରୁ-ନାହାନ୍ତି, ଏହାର ଶବ୍ଦରେ ଫିଟି ଗଲେ । ଘୋଡ଼ା ସେଇଠି ଦମ୍ ମାରିଲା, ବାଘ ଚଢ଼ାଇଗୁଡ଼ିକ କହିଲେ ରାଜାପୁଅକୁ, ଆମେ ବାରବର୍ଷ ହେଲା ଗଣ୍ଡି ପଡ଼ିଯାଇଥିଲୁ, ଫିଟିପାରୁ ନ ଥିଲୁ, ଖାଉ ନଥିଲୁ, ପିଉ ନ ଥିଲୁ, ତମେ ଆମକୁ ଉଦ୍ଧାର କଲ, ତମର ଆମେ କଣ ଉପକାର କରିବୁ ? ରାଜାପୁଅ କହିଲା ଅଇଚୁକା (୧) ତମର କିଛି କରିବାର ଦରକାର ନାହିଁ, ଯେତେବେଳେ ମତେ ବିପତ୍ତି ପଡ଼ିବ ତେବେ ସେତେବେଳେ ମୋର ଉପକାର କରିବ । ଏହା କହି ପକ୍ଷିରାଜ ଘୋଡ଼ା ଉପରେ ଚଢ଼ି ସେଠାରୁ ଗଲା, ଯାଇଁ ଏକ ରାଜାଦେଶରେ ପହଞ୍ଚିଲା, ସେଠାରେ ଗୋଟିଏ ମାଳୁଣୀଘରେ ରହିଲା । ଦିନେ ଶୁଣିଲା, ମାଳୁଣୀ ଫୁଲ ଗୁନ୍ଥୁଚି, ଏ ପୁଅ କହିଲା, କଣ ମଉସି କାହାପାଇଁ ଫୁଲ ଗୁନ୍ଥୁଚୁ ? ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଳୁଣୀ କହିଲା ରାଜାଙ୍କ ଜେମା (୨) ପାଇଁ ଫୁଲ ଗୁନ୍ଥୁଚି, ତୁ କୋଉଠି ଗୁନ୍ଥିବୁ, ଥିବୁ ସିନା

---

। ବର୍ତ୍ତମାନ

୨ । ୫୭

ହେବ । ଏ କହିଲା ମୁଁ ଖଣ୍ଡିଏ ଗୁନ୍ଥେଇ ଦେଖେ, ସୁନ୍ଦର ହେଲେ ନେଇଯିବ ଅସୁନ୍ଦର ହେଲେ ପକାଇ ଦେଇଯିବୁ । ରାଜପୁଅ ଯେଉଁ ଫୁଲଖଣ୍ଡି ଗୁନ୍ଥିଲା ସେ ଅତି ସୁନ୍ଦର ହେଲା, ମାଲୁଣୀ ନେଇ ରାଜଝିଅକୁ ଦେଲା । ଜେମାଦେଈ କହିଲେ, ଆଜି ଏ ଫୁଲ କିଏ ଗୁନ୍ଥିଚି କି ଏଡ଼େ ସୁନ୍ଦର ହୋଇଚି ? ମାଲୁଣୀ କହିଲା ମୋ ଝିଅ ଆସି ଅଛି ଯେ ତାହାର ହାତର ଗୁନ୍ଥା । ଜେମା ସେ ଝିଅଟିକି ଦେଖିବାକୁ ଲାଗିଲେ । ମାଲୁଣୀ ତହୁଁ ଆରଦିନ ରାଜପୁଅକୁ ଝିଅଙ୍କର (୧) ଶାଢ଼ୀ ଖଣ୍ଡେ, ଚିତ୍ରଲଖଡ଼ି ଦିପଟ ପିନ୍ଧାଇ ଦେଇ ରାଜା ନଅରକୁ ନେଇଗଲା ଜେମା ଏହା ସଙ୍ଗରେ କଥାବାର୍ତ୍ତା ହେଲେ । ରାଜପୁଅ କହିଲା ମୁଁ ଝିଅ ନୁହେଁ ଆର ଦେଶର ରାଜପୁଅ, ଏମନ୍ତ୨ ଦୁର୍ଘଟଣାରେ ପଡ଼ି ଏଠାକୁ ଆସି ମାଲୁଣୀଘରେ ରହିଅଛି । ଏହିପରି ଦେଖା ସାକ୍ଷାତ ହୋଇ ରାଜପୁଅର ଆଉ ସେ ଜେମାର ବଡ଼ ମନ ମିଳିଲା । ରାଜପୁଅ ସବୁଦିନେ ରାତିରେ ଜେମାଙ୍କ ପାଖକୁ ଯିବା ଆସିବା କରେ, ତା ଆଉ କେହି ଜାଣନ୍ତି ନାହିଁ । ରାଜଝିଅ ସବୁଦିନେ ତଉଲା ହୁଏ, ଗୋଟିଏ ଫୁଲର ଓଜନ ହୁଏ, ସୁଆଡ଼କୁ୨ ବେଶୀ୨ ଓଜନ ହେଲା । ଯେ ତଉଳୁଥିଲା ସେ ରାଜାଙ୍କୁ କହିଲା ମଣିମା ! ଆପଣଙ୍କ ଜେମାଦେଈ ଏବେ ବେଶୀ ଭାରି ହେଲେଣି, ଗୋଟିଏ ଫୁଲରେ ଆଉ ଏବେ ଓଜନ ଉଠୁ ନାହାନ୍ତି । ରାଜା ବିଚାର କଲେ ଝିଅଟାକୁ କିଏ ଆଉ ଆସୁଚି ! ହୁକୁମ ଦେଲେ ଯେ ଅଜା ସିନ୍ଦୂରରେ ବାନ୍ଧଣା କର, ଯେ ଆସିବ ସେ ଚିହ୍ନାପଡ଼ିବ । ଧୋବାକୁ କୁହା ହୋଇଥାଏ କି ତୋ ଘରେ ଯେ ଏପରି ଲୁଗା ପକାଇବ ତାକୁ ଧରାଇ ଦେବୁ, ନ ଦେଲେ ତୋର ସବଂଶ ମୁଣ୍ଡ କଟା ହେବ । ସେଦିନ ରାତିକି ରାଜପୁଅ ଆସିଲା । ଜେମାଦେଈ

---

୧ । ରଙ୍ଗ ।

କହିଲେ ହେ ! ତେମେ ଥକ ଯାଅ ବାହାର, ସିନ୍ଦୁକରେ ବନ୍ଧଣା
ହୋଇଚି । ଏ ଅମାନଅହୋଇ ବନ୍ଧଣାରେ ବସାଇଠାକଲ, ଧୋବାକୁ
ଟଙ୍କା ଦେଇ ଲୁଗା କଚାଇ ଅଣିଲ, ଆଉକେହି ଜାଣି ପାରିଲେନାହିଁ ।
ତହୁଁ ଆରଦିନ ଧୋବାକୁ ପଚାରି ଦେଲ, ସେ ନାହିଁ କଲା, କହିଲା,
କେହି ମୋ ଘରେ ଲୁଗା ପକାଇ ନାହାନ୍ତି । ରାଜା କହିଲେ ଆଉ
କଣ କଲେ ଜଣା ପଡ଼ିବ ? ମନ୍ତ୍ରୀ କହିଲେ, କଂସାର କରନ୍ତି କରି
କବାଟ ଦେହରେ ଦେଇଥାଅ, ଯେ ଅସିବ ତା ଉପରେ ପଡ଼ିଲେ
ମରିବ । କଂସାର କରତ ତିଆର ହେଲା, ନାଗବନ୍ଧ ଦେହରେ
ଦିଆଗଲା । ରାଜାପୁଅ ସେଦିନ ସେହିପରି ଆସିଲା, ରାଜାଝିଅ କହିଲା
କାହିଁକି ଅସିଲ, ଆଜ କଂସାର କରତ କରି ନାଗବନ୍ଧରେ ଦେଇଛନ୍ତି,
ତେମେ ଫେରିଯାଅ । ରାଜାପୁଅ କହିଲା ଓହୋ ! କଣ ହୋଇଯିବ ?
ଯେବେ କାଟୁକଥା ହୋଇଯିବ, ତେବେ ମତେ ପୋଡ଼ିବ ନାହିଁ କି
ପୋତିବ ନାହିଁ, ନେଇକରି ଗୋଲପୋଖରୀ ପାଖରେ ଶୁଆଇ
ଦେଇ ଅସିବ । ଏହା କହି ଘରଭିତରକୁ ପଶିଗଲା ବେଳକୁ କରତ
ଖସିଲା ସେ ରାଜାପୁଅ ମୁଣ୍ଡରେ ପଡ଼ିଲା, ରାଜାପୁଅ ସେଇଠି ମରିପଡ଼ିଲା ।
ତହୁଁ ଆରଦିନ ସବୁ ଦେଖିବାକୁ ଆସିଲେ, ଆସି ଦେଖନ୍ତି ସେ ଭଲମ
ସୁନ୍ଦର ରାଜାପୁଅଟିଏ ମରିପଡ଼ିଚି । ରାଜା କହିଲେ ଝିଅକୁ ଆହା ! ଏତେ
ସୁନ୍ଦର ପିଲାକୁ ତୁ କାହିଁକି ମାରିଲୁ, କହିଥିଲେ ତୋତେ ସେଇଥିକୁ
ବିଭା କରାଇ ଦେଇଥାନ୍ତି । ଝିଅକୁ ସମସ୍ତେ ଗାଳିଦେଲେ । ରାଜା
କହିଲେ ଗୁଆଘିଅ ଚନ୍ଦନକାଠ ଅଣି ଦାହା କରାଇଦିଅ । ଝିଅ କହିଲା
ନାହିଁ ସେ ମନା କରିଛନ୍ତି, କହିଛନ୍ତି ମୋତେ ପୋଡ଼ିବ ନାହିଁ କି
ପୋତିବ ନାହିଁ, ଗୋଲପୋଖରୀ କୂଳେ ଶୁଆଇଦେଇ ଆସିବ । ରାଜା
କହିଲେ ହଉ ନିଅ, ସେ ଯାହାକହିଚି ସେଇଆ କର । ନେଇକି ଗୋଲ
ପୋଖରୀପାଖରେ ଶୁଆଇଦେଇ ଅସିଲେ ବାହାରି । ସେଠି ବାଘୁଆଚନ୍ଦ୍ରାଳ
ମାନେ ଚାଲିଲେ, ସେ ରାଜାପୁଅ ପାଖରେ ବସି ଗୁଣ ଗୁଣ ହେଇ

କାନ୍ଦିଲେ । ଏହିପରି କାନ୍ଦି କାନ୍ଦି ରାତିଅଧ ହେଲା, ଈଶ୍ୱରପାର୍ବତୀ ଆକାଶରେ ଯାଉଥାଇ ଥିଲେ, କାନ୍ଦଣା ଶୁଭିଲା । ପାର୍ବତୀ କହିଲେ, ଉଦୟବନ୍ତି କାହିଁକି ପୃଥିବୀଟା ଭାସି ଯାଉଛି, କି ? ମୁଣ୍ଡଏ ରାଣୀ ହୋଇ କାନ୍ଦିଲା ପରି ଶୁଭୁଛି । ଈଶ୍ୱର କହିଲେ ଶୁଣ ବାହାର ହୋ ! ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ ଶୁଣିବ ନାହିଁ, ପୃଥିବୀର ଭାର ନେଇଛ କାହିଁକି ? ଈଶ୍ୱର କହିଲେ ହଉ ଚାଲ । ଗଲେ, ପଚାରିଲେ, ତୁମେ କିଏ କାହିଁକି କାନ୍ଦୁଛ ? ବାମ୍ଭଣୀ ଗୁଡ଼ିକ ଆପଣାର ଆଉ ରାଜପୁଅର ଯେତେ କଥା ଥିଲା ସବୁ କହିଗଲେ । ଈଶ୍ୱରପାର୍ବତୀ କହିଲେ, ହଉ ହେବ ତେଣିକି ମୁହଁ ବୁଲା । ଏମାନେ ସେ ଆଡ଼କୁ ମୁହଁ ବୁଲାଇ ବସିଲେ, ଈଶ୍ୱରପାର୍ବତୀ ଫୁଲପାଣି କରି ଛିଞ୍ଚି ମୂଠା ଛୁଞ୍ଚି ଦେଲେ ଯେ ରାଜପୁଅ ଜୀଇ ଉଠିଲା, ଈଶ୍ୱରପାର୍ବତୀ କୁଆଡ଼େ ଉଭେଇ ଗଲେ । ରାଜପୁଅ ତହିଁ ଆରଦିନ ଉଠି ମାଲୁଣୀଘରକୁ ଗଲା, ସେଦିନ ରାତିରେ ରାଜାଝିଅ ସାଙ୍ଗେ ଦେଖା କଲା । ସେ ବଞ୍ଚିକରି ଆସିଲାଣି ବୋଲି ରାଜା ଜାଣିଲେ, କହିଲେ, ଆମ ଝିଅକୁ ତାକୁ ବିଭାକରି ଦେବା । ଘର ଲିପା ହେଲା, ବେଦୀ ତୋଳା ହେଲା, ବିଭାଘରର ଆଉ ସବୁ ଆୟୋଜନମାନ ହେଲା, ରାଜା ଭଲଦିନ ଦେଖି ଝିଅକୁ ସେ ରାଜପୁଅକୁ ବିଭା କରିଦେଲେ, ବହୁତ ଧନ ଯଉତୁକ ଦେଇ ଝିଅଜୋଇଁଙ୍କୁ ବିଦା କଲେ । ରାଜପୁଅ ବିଭା ହୋଇ ଘରକୁ ଆସୁଛି, ଗାଁପାଖରେ ହେଲାଣି ସମସ୍ତେ କହିଲେ କେଉଁ ରଜା ଆସୁଛି, ଯୁଦ୍ଧ କରିବାକୁ । ରାଜା ଆଉ ପୁଅ ବୋଲି ଜାଣି ନାହାନ୍ତି, ବେକରେ ପାଲଦଉଡ଼ି ଗୋଟାଏ ପକାଇ ଦଣ୍ଡବତ କରିବାକୁ ଗଲେ, ଯାଇଁ ପାଲିଙ୍କି ପାଖରେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ । ଏ ପାଲିଙ୍କିରୁ ଡେଇଁ ପଡ଼ିଲା କହିଲା ଏକଣ ! ତୁମେ ବାପ, ମୁଁ ପୁଅ, ତୁମେ ମୋ ଗୋଡ଼ତଳେ ପଡ଼ୁଛ ? ରାଜା କହିଲେ ମୁଁ ପୁଅ କେଉଁଠୁ ପାଇବି ? ଏ କହିଲା ତମ ଘୋଡ଼ାଶାଳ ଲଣ୍ଡିକୁ

ଡାକ, ଧାଇଁକୁ ଡାକ, ଏମାନେ ସବୁକଥା କହିବେ । ଏମାନଙ୍କୁ ଡକାଗଲା, ଏମାନଙ୍କ ଆଗରେ ସାକ୍ଷ୍ୟ ସବୁ କହିଗଲା, ସେପରି ସେ ଜନ୍ମ ହେବାବେଳେ ଧାଇଁ କାଠକଣ୍ଢାଳଟାଏ ଦେଖାଇ ତାକୁ ଖାଲଗଦାରେ ପକାଇଦେଲା, କୁକୁର, କୁତ୍ର, କାଳୀଗାଈ, ପକ୍ଷିରାଜ ଘୋଡ଼ା ସେପରି ତାକୁ ବଞ୍ଚାଇ ମନୁଷ କଲେ, ସବୁ କଥା କହିଗଲା। ଏ ସବୁ କଥା ସାହିଗଲା । ରଜା ପୁଅବୋହୂକୁ ଘରକୁ ନେଲେ, ଘୋଡ଼ାଶାଳ ଲଣ୍ଡିକୁ ଆଣିଲେ, ତାକୁ ସପାଖୁରୁଷ କରାଇ ପାଟପୀତା-ମ୍ବର ପିନ୍ଧାଇ ଘରକୁ ନେଲେ । ଗୋଟାଏ ଟୋପର (    ) ଖୋଳାଇ ଏ ଛଅଭଉଣୀଙ୍କ ଧାଇଁଙ୍କ ତହିଁରେ ପକାଇଦେଲେ, ତଳକଣ୍ଟା ଉପର କଣ୍ଟା ଗୁଞ୍ଜିଦେଲେ, ମାଟିଚଢ଼ାଇ ଦେଲେ । ରଜା ପୁଅବୋହୂ ଘେନା ଘରଦୁଆର କଲେ, ମୁଁ ଭଲକୁ କଥା କହିଲେ ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

— ❖❖ —

## ହଳାହଳକୁମର ବା ଶଶିସେନା ଅଭିମନ୍ୟୁ କଥା ।

ଗୋଟିଏ ଦେଶରେ ରଜାଟିଏ, ତାର ଗୋଟିଏ ଝିଅ । ଝିଅଟି ନାଁ ଶଶିସେନା । ସେହି ଦେଶରେ ଗୋଟିଏ ଚାଟଶାଳିଆ ପଣ୍ଡା ଥାଏ, ତାର

କେହି ନାହିଁ ; ଗୋଟିଏ ଭାରିଯା । ଚକୁଳିଆପଣ୍ଡା ଛଅଟା ଗଲେ ସେଠରେ, ନଅଟା ଗଲେ ସେଠରେ ଅଟଣ, ତାଙ୍କୁ କିରସ୍ତ ଲୋକମା ଖାଇ ପିଇ ସୁଖରେ ଥାନ୍ତି । ଦିନକରେ ଚକୁଳିଆପଣ୍ଡା ନଈକୁ ବାଧୋଇ ଯାଇଥିଲେ, ନାଗଲୋକର ରାଜାରପୁଅ ହଳାହଳକୁମରର ମନ ଦେଖିବାକୁ ବଡ଼ ଇଚ୍ଛା, ସେ ନଈରେ ସାପପୁଅଟିଏ ହୋଇ ଖେଳୁ ଥିଲା, ଚକୁଳିଆପଣ୍ଡାର ଡ଼ାଲରେ ପଶି ତା ଘରକୁ ଆସିଲା । ଚକୁ- ଳିଆପଣ୍ଡାର ଭାରିଯା ପାଣି ଢାଳିଲାବେଳେ ଦେଖିଲା ଯେ ସାପପୁଅଟି ଗୋଟିଏ ଉତ୍ତମ ସୁନ୍ଦର ବାଳକଟିଏ ହୋଇ ଡ଼ାଲରେ ଅଛି । ଚକୁ- ଳିଆପଣ୍ଡା ଦେଖିଲା, ଦିହେଁଯାକ ବଡ଼ ଖୁସି ହେଲେ, ପିଲାଟିକି ଆପ- ଣାର ପୁଅକରି ପାଳିଲେ । ପୁଅଟି ନାଁ ହେଲାଥାନ୍ତି ଅଭିମନ୍ୟୁ । ପୁଅଟି ବଡ଼ ହେଲା, ତାଙ୍କୁ ଚାଟଶାଳରେ ପାଠ ପଢ଼ିବାକୁ ପଠାଇଲେ । ସେହି ଚାଟଶାଳିରେ ରାଜାଝିଅ ଶଶିସେନା ପଢ଼ୁଥାଏ । ଦିନକର ଅଭିମନ୍ୟୁର ଖଡ଼ୀ ଛିଡ଼ିଗଲା ଶଶିସେନା ଆଡ଼କୁ । ଏ କହିଲା ହେ ଶଶିସେନା ! ଟିକିଏ ଖଡ଼ୀ ଦେବୁଟି ? ଶଶିସେନା କହିଲା ତୁ ସତ୍ୟ କର ଖଡ଼ୀ ଦେବି, ଅଭିମନ୍ୟୁ କହିଲା ଦେ ହୋ ଖଡ଼ୀ, ସତ୍ୟ ଗୋଟାଏ କଣ ? ଏ କହିଲା ନା, ତୁ ସତ୍ୟ ନ କଲେ ମୁଁ କେବେ ଖଡ଼ୀ ଦେବି ନାହିଁ । ଅଭିମନ୍ୟୁ କହିଲା ହିଁ, ମୁଁ ସତ୍ୟ କଲି ଖଡ଼ୀ ଦେ, ଏ ସେଥିରୁ ଖଡ଼ୀ ଦେଲା । ଚାଟଶାଳି ଛୁଟି ହେଲା, ଯେ ଯାହା ଘରକୁ ଗଲେ । ତହିଁ ଆଉ କେହି ଅପେନାହାନ୍ତି, ଏକା ଶଶିସେନା ଚାଟଶାଳିରେ ଅଛି, ତେଣୁ ଅଭିମନ୍ୟୁ ଆସି ଶଶିସେନାର ଅଞ୍ଚଳ ବୁଜି ଧଇଲା, ଖୁବ୍ ଜୋରମରେ କରି ବୁଜି ଧଇଲା, କହିଲା କାଲି କାହିଁକି ସତ୍ୟ କରାଇଥିଲୁ କହ । ଶଶିସେନା କହିଲା ମତେ ତେମେ ବିଭା ହେବ, ଅଭିମନ୍ୟୁ କହିଲା ହଉ ମାତ୍ର ଆମର ଏ ରାଜ୍ୟରେ ଆଉ ରହିବା ନାହିଁ । ଶଶିସେନା କହିଲା ହଉ ଚାଲ ଯିବା ଆଉ କେଉଁ ଦେଶକୁ । ଚଲେ ଘୋଡ଼ା ଶାଳରୁ ଗୋଟିଏ ମଞ୍ଜିଆ ଘୋଡ଼ାଟିଏ ହୋଇଥିଲା ଆଣିଲେ, ଖଣ୍ଡା ଆଣିଲେ,

ବାର ହାତ ଖଣ୍ଡା ଆଣିଲେ, ଦୁହେଁଯାକ ଘୋଡ଼ାରେ ବସିଲେ, ଗଲେ । ଯାଉଛନ୍ତି, ବାଟରେ ଗୋଟାଏ ଠେକୁଆଲାଙ୍ଗୁଡ଼ ପଡ଼ିଛି, ସେ କହିଲା ମତେ ସାଙ୍ଗରେ ନିଅ ତମର ବଡ଼ ଉପକାରରେ ଆସିବ । ଶଶି ସେନା କହିଲା ହଉ ଆଣ । ତାକୁ ଆଣିଲେ, ଘୋଡ଼ା ଲାଙ୍ଗୁଡ଼ରେ ବାନ୍ଧି-ଦେଲେ, ନେଇକରି ଗଲେ । ଫେର୍ ଅଳ୍ପ କେତେଦୂର ଯାଉଛନ୍ତି, କୁଲ୍ହା ବାଉଁଶିଅ ଗୁଡ଼ାଏ ଯାଉଛି ବିକା ହେବାକୁ, ଠେକୁଆଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଥିରୁ ଦଶଟା ନିଅ, ବହୁତ ଉପକାରକୁ ଆସିବ, କୁଲ୍ହା ବାଉଁଶିଅ ଦଶଟା ନେଲେ । ଆଉ କିଛିଦୂର ଯାଉଛନ୍ତି, ଲଙ୍ଗଳ ଲୁହାଟାଏ ବାଟରେ ପଡ଼ିଚି, ଠେକୁଆ ଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଇଟାକୁ ନିଅ ବହୁତ ଉପକାର କରିବ । ତାକୁ ନେଲେ, ଯାଇ ଗୋଟିଏ ବୁଢ଼ୀ ଅସୁରୁଣୀ ଦୁଆରେ ରାତି ହେଲା, ସେଇଠି ରହିଲେ । ବୁଢ଼ୀ ଅସୁରୁଣୀ ବଡ଼ ଆଦର କଲା, ଗୋଟାଏ ଘରେ ନେଇ ଏମାନଙ୍କୁ ରଖାଇ ଦେଲା । ଏମାନେ ଆଉ ଜାଣନ୍ତି ନାହିଁ ଅସୁର ଘର ବୋଲି । ଅଛନ୍ତି, ଅସୁରୁଣୀର ପୁଅଯାକ ବୁଲି ଯାଇଥିଲେ, ସତଙ୍କ ସମସ୍ତେ ଆସିଲେ । ବୁଢ଼ୀ ଅସୁରୁଣୀ କହିଲା ଆସ ତମପାଇଁ ଆଜି ସୁନ୍ଦର ଦରବ ରଖିଚି, ସତ ଭାଇଯାକ ଆନନ୍ଦରେ ଖାଇବ । ଏ ସବୁ କହିଲେ କାହିଁ, ବୁଢ଼ୀ ଅସୁରୁଣୀ କହିଲା ଘରଦୁଆରେ ଅଛନ୍ତି । ଏମାନେ ଦଉଡ଼ିଲେ, ସେ ଘରେ ଅଭିମନ୍ୟୁ ହେଉଛି । କବାଟ କିଳି ନିଧମ ହୋଇ ଶୋଇଛନ୍ତି । ଏ ପଚାରିଲେ ତେମେ କିଏ ? ଠେକୁଆ ଲାଙ୍ଗୁଡ଼ କହିଲା ଆମେ ଅସୁରଙ୍କ ଶଶୁର । ଏ ସବୁ ଡରିଲେ, ଭାବି ଲେ ଆମେତ ଅସୁର, ଆମର ଗୋଟାଏ ଶଶୁର କୋଉଠୁ ଅଇଲା ? କହିଲେ ଆଚ୍ଛା ହଉ ତେମେ ଯେବେ ଅସୁରଙ୍କ ଶଶୁର ହେବେ ତମ ଜିଭ କାହିଁ ଦେଖାଅ ? ଠେକୁଆଲାଙ୍ଗୁଡ଼ କୁଲ୍ହାଟାକୁ ଦେଖାଇଦେଲା । ତମ ଦାଢ଼ି କାହିଁ ଦେଖାଅ ? ଏ ବାଉଁଶିଆକୁ ଦେଖାଇ ଦେଲା, ତମ ଦାନ୍ତ କାହିଁ ଦେଖାଅ ? ଏ ଲଙ୍ଗଳଲୁହାଟାକୁ ଦେଖାଇଦେଲା ।

ଅସୁରଯାକ ଡର କରି ରହିଲେ, କହିଲେ ଯେ କାଲେ ଆମର ଶାସ୍ତି ହୋଇଥିବ । ରାତିରେ ଖାଇପିଇ ଶୋଇଲେ, ଏମାନଙ୍କ ନିଦ ହୋଇ ଠେଙ୍ଗୁଆଲଙ୍ଗୁଡ଼ା ଅଭିମନ୍ୟୁ ଶଙ୍ଖସେନାକୁ ଉଠାଇ ସବୁକଥା କହିଲା, ଏମାନେ ସବୁ ଘୋଡ଼ାରେ ବସି ଗଲେ ବାହାରି । ସକାଳ ହେଲାରୁ ଅସୁରମାନେ ଦେଖନ୍ତି ଯେ କେହି ନାହାନ୍ତି । ବୁଢ଼ୀ ଅସୁରୁଣୀ କହିଲା ଦେଖିଲ, ଏତେବେଳେ ଶତାକୋଷ ଚାଲିଗଲେ. ଯାଅ ମୁଁ ଘୋଡ଼ା ଲାଙ୍ଗୁଡ଼ରେ ସୋରିଷ ବାନ୍ଧିଦେଇଛି, ସୋରିଷ ବୁଣି ବୁଣି ଯାଉଥିବ, ଗଛ ଉଠି ଉଠି ଯାଉଥିବ; ଫୁଲ ଫୁଟି ଫୁଟି ଯାଉଥିବ; ଦେଖିବ ସେମାନେ ସେହି-ବାଟେ ଯାଉଥିବେ । ଅସୁର ସାତଭାଇ ଦଉଡ଼ିଲେ ସେହିବାଟେ ଦେଖି ଦେଖିକା । ପାଖରେ ମିଶିବାକୁ ଅଳପ ବାଟ ଅଛି ଶଙ୍ଖସେନା ଅନାଇ ଦେଲା, ଦେଖିଲାବେଳକୁ ଅସୁରଗୁଡ଼ାକ ଗୋଡ଼ାଇଛନ୍ତି । ଅଭିମନ୍ୟୁକୁ ଦେଖାଇ ଦେଲାରୁ ଅଭିମନ୍ୟୁ କଣ କଲା ଗୁଡ଼ାଏ ବେତମଞ୍ଜି ବୁଣି-ଦେଲା ଯେ ବେତବଣ ହୋଇଗଲା । ଅସୁର ତାକୁ ମାନିଲେ ନାହିଁ, ମାଡ଼ିଦେଇଗଲେ । ଅଭିମନ୍ୟୁ ପଛକୁ ଅନାଇ ଦେଖେ ଯେ ଅସୁର ଗୋଡ଼ାଇ ଆସୁଛନ୍ତି । ସେ ସେଉଠୁ ଗୁଡ଼ାଏ ଅଙ୍ଗାର ବୁଣିଦେଇ କହିଲା ଯେବେ ସତ୍ୟଯୁଗ ହୋଇଥିବ, ଖାଲି ଅଗ୍ନିମୟ ହୋଇଯିବ । ସବୁ ଅଗ୍ନିମୟ ହୋଇଗଲା, ଅସୁର ନିଆଁକୁ ମାନିଲେ ନାହିଁ ମାଡ଼ି—ଦେଇ ଚାଲିଗଲେ, ତାଙ୍କ ପଛକୁ ପଛକୁ ଲାଗିଗଲେ । ଅଭିମନ୍ୟୁ ସେଉଠୁ କଣ କଲା, ପଛକୁ ଅନାଇଁ ଫୁଙ୍କର ଫୁଙ୍କିଦେଲା ଯେ କୁହୁଡ଼ି ଘୋଟିଗଲା, କାହାକୁ ବାଟ ଦିଶିଲା ନାହିଁ । ଅସୁର ମନସଗନ୍ଧ ଶୁଙ୍ଘି ଶୁଙ୍ଘି ଘୋଡ଼ା ପଛକୁ ଲାଗି-ଗଲେ । ଅଭିମନ୍ୟୁ କହିଲା ମୋର ଆଉ ଦୋଷ ନାହିଁ, ଏହା କହି ହାତହାତ ଖଣ୍ଡାକୁ ବୁଲାଇଦେଲା ଯେ ଅସୁରଯାକ ହଟ୍ ହଟ୍ କାଟି ହୋଇଗଲେ; ଏକା ସବା ସାନଭାଇ ଠିମା ଅସୁରଟି ଘୋଡ଼ା ପେଟତଳେ ଲୁଚିଗଲା । ଠିମା ଅସୁର ବାହାରିପଡ଼ି କହିଲା ମୋତେ ମାରନା, ମୁଁ ତମର ଭଣ୍ଡାରି ହୋଇ ତମ ନାଗରେ ରହିବି । ଶଙ୍ଖସେନା କହିଲା ବନ୍ଧୁ

ଥାଉ; ଏଥି ତାକୁ ମାରନା । ତାଙ୍କୁ ସଙ୍ଗରେ ନେଲେ, ଯାହା ଚୋଟିଏ ନିର୍ଜନ ଥାନରେ ମୋହିତ ଲୁଗାନେଲାଇଲେ ପାନ ନାହିଁ, ମନଖିଆ ଠାବ ନାହିଁ ମେଲଣି ପଡ଼ିଲେ, ମେଲଣି ବଧାଇକନ୍ତ ରହିଲେ । ଶଶିସେନା ଗୋଟେଖେଳ ନାମ ହେଲା, ଇଂସାଧ୍ୟାନ ନେଲେ ନେଇ ଗଲା ଅଭିମନ୍ୟୁ ଗାଧୋଇବ ବୋଲି । ଅଭିମନ୍ୟୁ ନେନତେଭବରେ ବାଙ୍କୁଦାନ୍ତ ଝଣ୍ଡା ହାତରୁ ଛାଡ଼େ ନାହିଁ । ହିମାଅପୁର ତେଲ ଲଗାଇ ଦେଉଁ ? କହିଲା, ସବୁବେଳେ କାହିଁକି ଖଣ୍ଡାଟା ହାତରେ ଧରିଥାଅ ? ରଖିଦିଅ, ମୁଁ ଭଲକରି ତେଲ ଲଗାଇ ଦିଏ । ଅଭିମନ୍ୟୁ ଖଣ୍ଡା ଥୋଇ ଦେଲା । ହିମାଅପୁର ତେଲ ଲଗାଇ ଦେଉଛି, ମନେ ମନେ ବିଚାରିଲା, ଅଭି-ମନ୍ୟୁକୁ ହାଣି ପକାଇଲା । ହାତଗୋଡ଼ ବାନ୍ଧିକି ପୋତିପକାଇଲା, ଗଣ୍ଡି ବି ଗିଳିଦେଲା, ଚକ୍ଷୁଣ ହୋଇ ଦସିପସି ହୋଇ ଗାଧୋଇ ଆସିଲା, ଅଭି-ମନ୍ୟୁର ଲୁଗାକୁ ପିନ୍ଧିଲା; ଗାମୁଛା କାନ୍ଧରେ ପକାଇଲା, ଖଣ୍ଡାକୁ ହାତ-ରେ ଧରିଲା, ଅଭିମନ୍ୟୁ ବେଶଧରି ଗଲା ଶଶିସେନା ପାଖକୁ । ଶଶି-ସେନା ଆଉ ଜାଣେ ନା ହିମାଅପୁର ଛଦ୍ମବେଶ ଧରିଛି, ତାକୁ ଭାତ ବାଢ଼ି ଦେଲା, ଅଭିମନ୍ୟୁ ଯେତିକି ଖାଏ ସେତିକି ଦେଲା । ଏତ ଅଁସରଠାଏ, ମୁଁ ପେଟ କୋଉଠି ପୂରୁଛି ? ଶଶିସେନା ଯେତେ ଦେଉ ଥାଏ ପଛରେ, ଏ ଆଉ ନାହିଁ କରୁ ନ ଥାଏ, ସବୁ ଖାଉଥାଏ । ଶଶି-ସେନା ମନେ ହେଉଥାଏ ଅଜି କାହିଁକି ଏତେ ଖାଉଛନ୍ତି । ଏହିପରି ଭାବି ହେଉଥାଏ, ଅଜ ପିଠେଇ କରି କଷ୍ଟ କିଛି ନ ଥାଏ । ଯେତିକି ହାଣ୍ଡି ଭାତ ବେଷେଇ କରି ଦେଲା ଏ ସବୁ ଖାଇଲା । କେତେ-ବେଳକେ ଉଠିଲା ଖାଇବାଠାରୁ । ଶଶିସେନା ମନରେ ଦୋଦୋପାଞ୍ଚ ହେଉଥାଏ, ସେ ପଚାରିଲା ହିମାଅପୁର କାହିଁକି ? ଅଭିମନ୍ୟୁ ବେଶ ଧାରୀ ହିମାଅପୁର ମୁକିହସା ଦେଇ କହିଲା, ମୁଁ ପରା ହିମାଅପୁର । ତମ ଅଭିମନ୍ୟୁ ନଈରେ ବୁଡ଼ି ମରିବାରୁ ମୁଁ ପରା ତାଙ୍କ ଲୁଗାପଟା ପିନ୍ଧି ଆସିଛି ! ଶଶିସେନା ଅଭିମନ୍ୟୁର ବାଉଦାନ୍ତ ଖଣ୍ଡାଧରି କହିଲା

ଅଭିମନ୍ୟୁ କୋଉଠି ମରିଚି ଦେଖା, ନଇଲେ ଏହି ଖଣ୍ଡାରେ ତୋର ପ୍ରାଣ ନେବି । ହିମାଅସୁର ଭୟରେ ଯୋଉଠି ଗୋଡ଼ହାତ ପୋତିଥିଲା ଦେଖାଇ ଦେଲା । ଶଶିସେନା କହିଲା ଏ ସିନା ହାତଗୋଡ଼, ମୁଣ୍ଡ କାହିଁ ? ହିମାଅସୁର ମୁଣ୍ଡକୁ ବାହାର କରି ଦେଲା । ଶଶିସେନା ଅଭିମନ୍ୟୁର ଗୋଡ଼ହାତ ମୁଣ୍ଡ ସବୁ ଏକାଠି ଯୋଖି ଦେଲା, ସେଇଠି ବସି କାନ୍ଦିଲା । କାନ୍ଦି କାନ୍ଦି ରାତି ଅଧରୁ ବଳିଲାଣି, ଗୃହଅଟ୍ଟେ ସବସ୍ତେ ନିଶବ୍ଦ ହେଲେଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଥିଲେ, ପାର୍ବତୀ କହିଲେ ରହିଥିବନ୍ତି, ମଣିଷରେ କିଏ ଗୋଟିଏ କାନ୍ଦୁଚି । ଈଶ୍ୱର କହିଲେ ଚାଲଯିବା ବାହାର, ଆମର ସେଥିରେ କଣ ଅଛି । ପାର୍ବତୀ କହିଲେ କିଛି ହେଲେ ବୁଝିବ ନାହିଁ, ଏ ସୃଷ୍ଟି ତ ଆଇକ କାହିଁକି ? ଈଶ୍ୱର ପାର୍ବତୀ ଗଲେ, ଶଶିସେନାକୁ ପଚାରିଲେ ତୁ କିଏ, ଭୂତ କି ପ୍ରେତ କି ଡାହାଣୀ କି ଚିରୁଗୁଣୀ କି କିଏ, ତୁ କାହିଁକି ବସି କାନ୍ଦୁଚୁ ? ଏ କହିଲା, ମୁଁ ଭୂତ କି ପ୍ରେତ କେହି ନୁହେଁ, ଏମନ୍ତ ରାଜାଝିଅ, ଅଭିମନ୍ୟୁ ସଙ୍ଗରେ ଆସିଥିଲି, ତାକୁ ହିମାଅସୁର ମାରିପକାଇଚି, ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ଏହିପରି ସବୁ କହିଗଲା । ଈଶ୍ୱରପାର୍ବତୀ କହିଲେ ହଉ ତେବେ ଟିକିଏ ମୁହଁ ବୁଲା, ଫୁଲପାଣି କରି ଛିନମୁଣ୍ଡ ଛିଞ୍ଚିଦେଲେ ଯେ ଅଭିମନ୍ୟୁ ଜୀଇଉଠିଲା, ଈଶ୍ୱରପାର୍ବତୀ ଅନ୍ତର୍ଦ୍ଧାନ ହୋଇଗଲେ । ଶଶିସେନା ଅଭିମନ୍ୟୁକୁ ହିମାଅସୁର ଯାହା କରିଥିଲା ସବୁ କହିଲା । ଅଭିମନ୍ୟୁ କହିଲା ଆଉ ସ୍ତ୍ରୀକୁ ବିଶ୍ୱାସ ନାହିଁ, ସ୍ତ୍ରୀଭଗାଲ ସ୍ତ୍ରୀକୁ ଖୋଜିଲେଣି, ଏହା କହି ତାକୁ ସେଇଠି ହାଣି ପକାଇଲେ, ଆଉ ସେଠାରେ ରହିଲେ ନାହିଁ, ଗଲେ, ଯାଇ ଗୋଟିଏ ରଜା ଦେଶରେ ପହଞ୍ଚିଲେ । ଗୋଟିଏ ଆମ୍ବଗଛ ମୂଳେ ବସିଥନ୍ତି, ଅଭିମନ୍ୟୁକୁ ଶୋଷ କଲା, ଶଶିସେନାକୁ ସେଇଠି ବସାଇ ଦେଇ ଚାଲିଗଲା ଗାଁ ଭିତରକୁ ପାଣି ପିଇବାକୁ । ଅଭିମନ୍ୟୁ ଯାଉଣୁ ଗୋଟିଏ ଜ୍ଞାନଦେଇ ମାଲୁଣୀ ତାକୁ ଡାକିନେଲା ଘରକୁ, ଗୋଟିଏ କଳାଫୁଲ ଶୁଙ୍ଘାଇ ଦେଇ ତାକୁ କାଳିଅମେଣ୍ଢା କରିଦେଲା, ରଖିଲା । ଶଶିସେନା,

ଅନାଇଁ ୨ ଯାଉଁ ଅଭିମନ୍ୟୁ ନ ଆସିଲା, ଗଲା ଖୋଜିବାକୁ ଗାଁ ଭିତରକୁ ଏଣେ ସହର ଭିତରେ ଢେଣ୍ଡୁରା ହେଉଥିଲା ଯେ ସେ ରାଇଜରେ ଗଣ୍ଡାଗଯୂଳ ମାତିଛି, ଯେ ଗଯୂଳକୁ ମାରିଦେବ ସେ ରାଜାଝିଅକୁ ବାହାହେବ । ଶଶିସେନା ଗୋଟିଏ ପୁରୁଷ ବେଶ ଧରିଲା, ଆଉ ଅନେକ ରଜା ଆଉ ୨ ଦେଶରୁ ଆସିଥାନ୍ତି, ଯେ ସବୁ ଯାଉଥାନ୍ତି ଗଣ୍ଡାଗଯୂଳ ମାରିବାକୁ, ଶଶିସେନା ତାଙ୍କ ପଛେ ୨ ଘୋଡ଼ାରେ ଚଢ଼ି ଗଲା । ସମସ୍ତେ ଯାଇ ଗଣ୍ଡାଗଯୂଳ ବନସ୍ତରେ ପହଞ୍ଚିଲେ । ଶଶିସେନା ଠାରେ ବାରହାତ ଖଣ୍ଡା ଥାଏ, ଦୂରରୁ ତାକୁ ବୁଲାଇ ୨ ପିଙ୍ଗିଲା ଯେ ଗଣ୍ଡାଗଯୂଳ ଚିତଗର ହୋଇପଡ଼ିଲା । ଏ ଦଉଡ଼ିଯାଇ ଗଣ୍ଡା-ଗଯୂଳର ଜିଭ ନଖ କାଟିଆଣିଲା, ଆଉ ସବୁ ରଜାମାନେ ଫେରି ଆସିଲେ । ଶଶିସେନା ଗଣ୍ଡାଗଯୂଳର ଜିଭ ନଖ ରଜାଙ୍କ ଆଗେ ଥୋଇ ଦେଲା, ରଜା ଝିଅକୁ ତାକୁ ବାହା କରିବାର ସ୍ଥିର କଲେ । ବାହା-ଘର ଯୋଗାଡ଼ ହେଉଥାଏ, ଶଶିସେନ କହିଲା, ମୋର ଗୋଟାଏ ବ୍ରତ ଅଛି ବରଷେ, ମୁଁ ତାକୁ ପୂରଣ କରି ସାରିଲେ ବାହା ହେବି, ବାହାଘର ବନ୍ଦ ରହିଲା । ଶଶିସେନା ମରଦବେଶ ଧରି ରଜାଘରେ ଥାଏ, ମନେ ୨ ଅଭିମନ୍ୟୁକୁ ଖୋଜୁଥାଏ । ଅନେକଦିନ ଗଲାଣି, ଅଭିମନ୍ୟୁର କିଛି ଖୋଜଖବର ମିଳିଲାନାହିଁ । ଶଶିସେନା ଗୋଟାଏ ବୁଦ୍ଧି ପାଞ୍ଚିଲା, ବରଷପୂରିବାକୁ ଦଶ ପନ୍ଦର ଦିନ ଅଛି, ରଜାଙ୍କୁ କହିଲା ଏଠି ଯେଉଁ ମହାଦେବ ଅଛନ୍ତି, ତାଙ୍କ ଠାରେ ବାରୁଣୀ ବୁଡ଼ ପଡ଼ିବ, ଦେଶଯାକ ପିଟାଇ ଦିଅ ଯେ ଏ ରାଇଜରେ ଯେତେ ଲୋକ ଅଛନ୍ତି ସମସ୍ତେ ଆସିବେ ବୁଡ଼ ପକାଇବାକୁ । ରଜା ସେହିପରି କରାଇଦେଲେ ଯୋଉଦିନ ବୁଡ଼ ପଡ଼ିବ ସେଦିନ ସକାଳୁ ଶଶିସେନା ଗାଧୋଇ ଆସି ଘୋଡ଼ାରେ ଚଢ଼ି ଦେଉଳ ଚାରିପାଖ ପୋଖରୀ ଚାରିପାଖ ବୁଲୁଥାଏ, ଅଭିମନ୍ୟୁ ଆଗରୁ ଶୁଣିଥାଏ ଯେ ଜଣେ କିଏ ବାରହାତ ଖଣ୍ଡାରେ ଗଣ୍ଡାଗଯୂଳ ମାରି ରଜାଝିଅକୁ ବାହା ହେବ ବୋଲି ତାଙ୍କ ଘରେ

ଅଛୁ, ସେ ଏ ବାରୁଣୀବୁଢ଼ କରାଉଚ । ମନେ୨ ଭାବୁଥାଏ ଶଶିସେନା କଣ ଛତ୍ରୁ ବଶରେ ଏପର ଜାଉଚ ? ତେମ ଦନ ଅଭିମନ୍ୟୁ କହଲା ମାଲୁଣୀକ, ମାଉସୀ ! ଯେପର୍ଯ୍ୟନ୍ତ ବାରୁଣୀକି ଯାଉଥିବ୍ର, ମୁଁ କିଏ ଯାଉ ! ମାଲୁଣୀ କହଲା ନା ତୁ କୋଉଠି କି ଯିବୁ ? ଅଭିମନ୍ୟୁ ଯାଉଁ ଏକଜିଦ୍ ଲଗାଇଲା, ମାଲୁଣୀ ତାକୁ ଗୋଟାଏ ମାଇପୀ ବେଶକର ସାଙ୍ଗରେ ନେଲା । ଅଭିମନ୍ୟୁ ବୁଡ଼ ପକାଇଲା, ଗଲା ଦେଉଳ ଭିତରକୁ ଦର୍ଶନ କଲା । ସେହି ଦେଉଳ ଭିତରେ ଲେଖି ଦେଇଗଲା—

ଶଶିସେନା ବାଳୀ ମନରେ ଭାବିଲେଣି ଅଭିମନ୍ୟୁ ତାର ବର,
ଜ୍ଞାନଦା ମାଲୁଣୀ ବନ୍ଦୀ କରଅଛି ଦନେ କରେ ମେଷକର ।
ରାତରେ ଧବଳ ପୁଷ୍ପ ସୁଙ୍ଘାଇଣ କରଇ ଭେଣ୍ଡା ସୁନ୍ଦର,
ଏଥିରୁ ମୁକତ କରନ୍ତୁ ଯଦ ଶଶିସେନା ବେଗେ କର ।

ଅଭିମନ୍ୟୁ ତ ସ୍ତ୍ରୀଙ୍କ ବେଶ ହୋଇଚ, ଶଶିସେନା ବୁଲି୨ ଆଉ ଭିଡ଼ଠେଇଁ ତାକୁ ପାଇଲା ନାହିଁ । ଦେଉଳଭିତରେ ଗୁଡ଼ାଏ କଣ ଲେଖା ହୋଇଚ ବୋଲି ପଢ଼ିଲାବେଳକୁ ଅଭିମନ୍ୟୁର କଥା ସବୁ ଲେଖା ହୋଇଛ । ଶଶିସେନା ତହିଁ ଆରଦନ ମାଲୁଣୀକି ଆଉ ତାର କାଳିଆ ମେଣ୍ଢାକୁ ଘେନାଇ ଅଣାଇଲା, ମାଲୁଣୀକି କହିଲା ତାକୁ ମଣିଷ କରଦେ, ମାଲୁଣୀ କହୁଥାଏ ମେଣ୍ଢାଟା କିପର ମଣିଷ ହେବ ? ଆଉ କିଛି କହୁ ନ ଥାଏ । ଯେଉଁ ମାଲୁଣୀକି ବଳୁଆଡରେ ଗୁଡ଼ାଏ ମାଡ଼ ହେଲା, ମାଲୁଣୀ ଧଳାଫୁଲ ସୁଙ୍ଘାଇ ଅଭିମନ୍ୟୁକୁ ନଜରୂପ କରଦେଲା । ରଜା ସବୁକଥା ଜାଣିଲେ, ମାଲୁଣୀକି ଶୂଳିଆ ପଦାରେ ଶୂଳିଦେଲେ, ତା ଘରେ ଯେତେ ଧନ ଦରବ ଥିଲା ତାକୁ ନଅରକୁ ଘେନ ଆସିଲେ । ଶଶିସେନା ରଜାଙ୍କ ହାତ ଧର ପକାଇଲା, କହିଲା ମୁଁ ଆପଣଙ୍କର ଧର୍ମଝିଅ ହେଲି । ଆଜଠାରୁ ଆପଣଙ୍କ ଝିଅକୁ ଅଭିମୋତେ ଅଭିମନ୍ୟୁକୁ ବାଭାକରଦିଅନ୍ତୁ । ରଜା ବଡ଼ ଖୁସିହେଲେ, ଶଶିସେନାକୁ ଆଉ ଜେମାକୁ

ଅଭିମନ୍ୟୁକୁ ବିଭା କରାଇଦେଲେ । ଏମାନେ ଭଲରେ ଆନନ୍ଦରେ ରହିଲେ । ଏମାନେ ଥାଇ, ଏଣେ ଅଭିମନ୍ୟୁର ଗୋସାଇଁମାନଙ୍କର ଭାଇ-ଯାମାନେ ଘର ଭିତରେ ଥାଇ, ଏ କ ନାଗଲୋକକୁ ଯାଇ ମଲେ ରହିଲେ, ଆଉ କଣ ଆସିବେ କି ? ସମସ୍ତେ ବସିଲ କଲେ, ଜଣେ ତାଙ୍କ ଘରକୁ ଗୋଟିଏ ଶବରୀବେଶ ହୋଇ ଗୃହକୁ ଅମରଫଳ ଟୋକାଇରେ ବୋହି ଅଭିମନ୍ୟୁ ଶଶୀସେନା ଯୋଉଠି ଅଛନ୍ତି, ସେଇ ଗାଁକୁ ଆସିଲା ଅଭିମନ୍ୟୁର ଦୁଇ ଭାଉଯାଙ୍କ ପାଖକୁ । ଏମାନେ ଗୋଟି ଅମରଫଳ ମାଗିଲେ କିଣିବାକୁ, ଯାଙ୍କପାଇଁ ଦେଇଛି ଅଭିମନ୍ୟୁ ପାଇଁ ଗୋଟିଏ, ଶବରୀ କହିଲା ଅଭିମନ୍ୟୁତ ଅମର ତାଙ୍କର ଫଳ କଣ ହେବ? ଏହା କହି ଦୋଟି ଫଳ ଦେଲା, ଏମାନେ ପଚାରିଲେ ଅଭିମନ୍ୟୁ ଅମର କେମନ୍ତ ଅମକୁ କହ । ଶବରୀ କହିଲା ତାଙ୍କୁ ପଚାରିବ ସେ ସବୁ କହିବେ, ଏହାକହି ଚାଲିଗଲା । ଯାଙ୍କର ମନ ଲାଗିଛି, ସେ ହିନ ଅଭିମନ୍ୟୁକୁ ତାର ନିଜ ନା କଣ ପଚାରିଲେ । ଅଭିମନ୍ୟୁର ନାଗ-ଲୋକ କଥା ମନେ ପଡ଼ିଲା, ସେଠା ଭାଉଯାମାନେ ମନେ ପକାଇଲେ, କହିଲା ମୋ ନାଆଁରୁ କେମେ କଣ ପାଇବ । ଏମାନେ ଏକଜିଦ୍ ଲଗାଇଲେ ଯୋଉଠୁ ଅଭିମନ୍ୟୁ କହିଲା ଆସ ମୋ ସାଙ୍ଗେ ନଈ କୂଳକୁ, ନାଆଁ କହିବି । ସମସ୍ତେ ଗଲେ, ଅଭିମନ୍ୟୁ ନଈରେ ଗ୍ରୀବାକୁ ପାଣିକୁ ଗଲା କହିଲା;—

କହ କହ ସୁନ୍ଦରୀ ଗୋ ମୋଠାରେ ଲୋଡ଼ା
କିବା ମୋର ନାମେ ଅଛି ତୁମ୍ଭ ଗରଧା ।

ଏମାନେ କହିଲେ;—

ନ କରନ୍ତି ସ୍ୱାମୀ ଆମ୍ଭଠାରେ ଅବିଶ୍ୱାସ
ନାମରେ ତୁମ୍ଭର ଅମ୍ଭେ ହୋଇବୁଁ ସନ୍ତୋଷ ।

ଅଭିମନ୍ୟୁ କହିଲା,—

ଯାଅ ଯାଅ ସୁନ୍ଦରୀ ଗୋ କରିବ ଘର
ମୋ ପାଁ ନାଗଲୋକେ ହଳାହଳ ଜ୍ୱର ।

ଏହା କହି ଅଭିମନ୍ୟୁ ବୁଡ଼ିଲା ଯେ ଆଉ ଉଠିଲା ନାହିଁ । ଶଶିରେଖା ଅଉ ସେ ରଜାଝିଅ କାନ୍ଦିବୋବାଇ ହୋଇ ଅଭିମନ୍ୟୁ ଯୋଉଠି ବୁଡ଼ିଥିଲା ସେଇଠି ବୁଡ଼ିଲେ, ଅଭିମନ୍ୟୁ ସାଙ୍ଗେ ଯାଇ ନାଗଲୋକରେ ମିଳିଲେ । ସେଠାରେ ନାଗପରୀମାନେ ସ୍ତ୍ରୀଙ୍କୁ ପାଖେ ପୁରାଇ ଦେଲେ ନାହିଁ । ଏମାନେ ଅପ୍‌ସରାଙ୍କ ସାଙ୍ଗେ ମିଶି ନୃତ୍ୟ କଲେ । ପ୍ରତିଦିନ ଏହିପରି ନୃତ୍ୟ କରନ୍ତି, ଖୁବ୍ ଭଲ ସୁନ୍ଦର ନୃତ୍ୟ କରନ୍ତି, ଅଭିମନ୍ୟୁକୁ ଦେଖନ୍ତି ଆସନ୍ତି । ଦିନକର ନାଗରାଜା ବାସୁକୀ କହିଲେ, ଏ ଅପ୍‌ସରା ହୋଇଛି ଭଲ ନୃତ୍ୟ କରୁଛନ୍ତି, ଯେଙ୍କୁ ବଦାକୀ କିଣ ଦେଉଛ ? ପ୍ରେମସ୍ତ୍ରୀ କହିଲେ ନାହିଁ ସେ କିଛୁ ନେଉ ନାହାନ୍ତି । ନାଗରାଜା ଏ ବହିଁକି ଡ଼ାକାଇଲେ ପଚାରିଲେ, ତମେ କଣ ନେବ ? ଏମାନେ କହିଲେ ଆମେ କିଛୁ ନେବୁ ନାହିଁ, ଆମକୁ ଏ ପୁରୁଷଟିକି ଦିଅ, ଅଭିମନ୍ୟୁକୁ ଦେଖାଇଦେଲେ । ନାଗପରୀମାନେ ନାହିଁ କଲେ ଯୋଉଠୁ ନାଗରାଜା ଆଉ କିଛୁ କହୁ ନ ଥାନ୍ତି । ଏମାନେ ଅଳି ଲଗାଇଲେ ଭାରୀ, ବାସୁକୀ କହିଲେ, ହଉ ନିଅ, ଏ ନରଲୋକରେ ଛମାସ ରହିବ, ନାଗଲୋକରେ ଛ ମାସ ରହିବ । ଏ ହିସେ ଅଭିମନ୍ୟୁକୁ ସାଙ୍ଗରେ ଘେନିକରି ଅସିଲେ, ସୁଖରେ ରହିଲେ, ଘରଦୁଆର କଲେ, ମୁଁ ଗଲାବେଳୁ କଥା କହିଲେ । ମୋ କଟାଟି ସରିଲା; ଇତ୍ୟାଦି ।



# ଉଜ୍ଜ୍ୱଳବତୀ କନ୍ୟା କଥା ।

ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୋଟୁଆଳପୁଅ ଏ ଚାରି ସଙ୍ଗାତ ପଶା ଖେଳୁଥିଲେ । ରଜାପୁଅ ହାରିଲା, କହିଲା ଏହି ଆଜି ଦୀପ ଦହଣ୍ଡି, ମଶାଲ ଲଗାଇ ଖେଳିବି, ନ ଜିତିଲେ କେବେ ଉଠିବି ନାହିଁ । ଉଜ୍ଜ୍ୱଳବତୀ ଦେଶର ଗୋଟିଏ ବ୍ରାହ୍ମଣ ଋଷି ସେଠେଇଁ ବସିଥାଏ, ସେ କହିଲା, ଦୀପ ଦହଣ୍ଡି କଣ ? ରଜାପୁଅଦେହରକା କହିଲେ, ତମେ ଆଜଯାଏ ଦୀପ ଦହଣ୍ଡି କଣ ଜାଣନା ? ତାଙ୍କୁ ସବୁ ବୁଝାଇ ଦେଲେ । ଏ ବ୍ରାହ୍ମଣ କହିଲା ଆମଦେଶରେ ଉଜ୍ଜ୍ୱଳବତୀ କନ୍ୟା ଯୋଗେ ଦୀପ ଜଳେ ନାହିଁ । ଏହା ଶୁଣି ରଜାପୁଅ ଉଜ୍ଜ୍ୱଳବତୀଙ୍କ ଭେଟି ଦେବାକୁ ବାହାରିଲା, ମନ୍ତ୍ରିପୁଅସାଙ୍ଗେ ତାର ମନ ମିଳେ, ତାଙ୍କୁ ସାଙ୍ଗରେ ନେଇଗଲା । ଦୁହେଁଯାକ ଘୋଡ଼ା ଚଢ଼ି ଯାଉଚନ୍ତି, ବାଟରେ ଗୋଟାଏ ପଥର ଚକଡ଼ା ପଡ଼ିଅଛି, ତା ଉପରେ ଦୁଇଜଣ ଚୋର ବସି କଜିଆ କରୁଚନ୍ତି । ସେ ଦିନ ସାଧବଘର ଚୋରି କରି ଅଣିଥାନ୍ତି; ଜଣେ କହୁଚି ମୁଁ ମୋହିମଣି, ମନପବନଖଣ୍ଡା ନେବି, ତୁ ଅଉ ସବୁ ପଦାର୍ଥ ନେ, ଆରଜଣକ ବି ସେଇଆ କହୁଥାଏ । ଏହିପରି କଜିଆ କରୁଥାନ୍ତି, ଘଡ଼ି ପାହା ହେଲାଣି, ରଜାପୁଅ, ମନ୍ତ୍ରିପୁଅ ଟେରକଲେ, ଜଣେ ଏ ପାଖରୁ ବୁଲିଗଲା, ଜଣେ ସେ ପାଖରୁ ବୁଲିଗଲା, ଏହିପରି ଚୋରଙ୍କୁ ଘେରିଗଲେ । ଚୋର ଯୁଦ୍ଧ ଦେଖି ପଳାଇଗଲେ । ରଜାପୁଅ ମନ୍ତ୍ରିପୁଅ ମୋହିମଣି, ମନପବନଖଣ୍ଡା ରଖିଲେ । ଅଉ ସବୁ ଧନ ଯୋଉ ସାଧବ ଘରୁ ଚୋରି ଯାଇଥିଲା, ତାକୁ ଦେଇଦେଲେ, ଗଲେ, ଯାଇଁ ଉଜ୍ଜ୍ୱଳବତୀ ନଗରରେ ଗୋଟିଏ ଜ୍ଞାନଦେଈ ମାଲୁଣୀଘରେ

ରହିଲେ । ମାଲୁଣୀ ବସିକେ ଫୁଲଗୁନ୍ଥୁଥିଲା, ମନ୍ତ୍ରିପୁଅ କହିଲା, ହଇଲୋ ମାଉସି । କାହାପାଇଁ ଫୁଲଗୁନ୍ଥୁଚୁ କି ? ମାଲୁଣୀ କହିଲା, ଉତ୍କଳବତୀ ପାଇଁ, ମନ୍ତ୍ରିପୁଅ କହିଲା, ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଲୁଣୀ କହିଲା ଅବୁଝିଯା ହେବ । ମନ୍ତ୍ରିପୁଅ କହିଲା ଅବୁଝିଯା ହେଲେ ରଖିଯିବୁ, ସୁନ୍ଦର ହେଲେ ନେଇଯିବୁ । ମନ୍ତ୍ରିପୁଅ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଫୁଲଠାରୁ ମନ୍ତ୍ରି-ପୁଅ ଫୁଲଖଣ୍ଡି ସୁନ୍ଦର ହେଲା । ମାଲୁଣୀ କହିଲା ଏ ଫୁଲଖଣ୍ଡି ଦେଇ କାହାନାଆଁରେ କହିବ ? ମନ୍ତ୍ରିପୁଅ କହିଲା, କହିବୁ ମୋ ଝିଅଟି ଆସିଛ ସେହି ଗୁନ୍ଥିଛି । ମାଲୁଣୀ ଦୁଖଣ୍ଡିଯାକ ଫୁଲ ନେଇକରି ଗଲା, ଉତ୍କଳବତୀ ପଚାରିଲା, ଏ ଫୁଲଖଣ୍ଡି କିଏ ଗୁନ୍ଥିଛି କହ ଲୋ । ମାଲୁଣୀ କହିଲା, ମୋ ଝିଅ ଆସି ଗୁନ୍ଥିଛି । ଉତ୍କଳବତୀ କହିଲା ତାକୁ ଟିକିଏ କାଲି ଏଠିକି ଆଣିବୁ, ଦେଖିବି । ତହିଁଆରଦିନ ମାଲୁଣୀ ମନ୍ତ୍ରି-ପୁଅକୁ ଖଣ୍ଡେ ଶାଢ଼ୀ ପିନ୍ଧାଇଦେଲା, ଖଡୁ ଯୋଡ଼ାଏ ଲଗାଇଦେଲା, ନେଇକରି ସାଙ୍ଗରେ ଗଲା । ଦ୍ୱାରୀମାନେ ପଚାରିଲେ, ସେ କିଏ ? ମାଲୁଣୀ କହିଲା ସେ ମୋ ଝିଅ । ତାକୁ ବାଟ ଛାଡ଼ିଦେଲେ, ସେ ଉତ୍କଳବତୀକି ଦେଖିକରି ଆସିଲା । ମନ୍ତ୍ରିପୁଅ ଆସି ଉତ୍କଳବତୀର ଗୋଟିଏ ଚିତ୍ର ଲେଖି ରାଜାପୁଅକୁ ଦେଖାଇଲା । ରାଜାପୁଅ ଉତ୍କଳ-ବତୀର ଚିତ୍ର ଦେଖି ମୋହ ହୋଇପଡ଼ିଲା । ମନ୍ତ୍ରିପୁଅ ତାକୁ ଚେତା କଲା ଯେ ରାଜାପୁଅର ଆଉ ଚେତା ହେଲା ନାହିଁ । ମନ୍ତ୍ରିପୁଅ ତାକୁ କିଛି ନ କରି ତେଲକୁଅରେ ପକାଇ ରଖିଦେଲା । ସେ ଦେଶରେ ଗଣ୍ଡାଗଯୂଳ ବଡ଼ ଉତ୍ପାତ କରୁଥାଏ । ରାଜାଙ୍କର ଆଜ୍ଞା ହୋଇଥାଏ ଯେ ଗଣ୍ଡାଗଯୂଳକୁ ମାରିଦେବ ତାକୁ ଉତ୍କଳବତୀ ବିଭା ହେବ । ବହୁତ ରାଜା ମାରିବାକୁ ଆସିଥାନ୍ତି । ସମସ୍ତେ ମାରିବାକୁ ଧାଇଁ ଚନ୍ତି, ଏ ମନ୍ତ୍ରିପୁଅ ସମସ୍ତଙ୍କ ପଛରେ ଗଲା, ଯାଇ ଗଣ୍ଡାଗଯୂଳ ହନସ୍ତରେ ପହଞ୍ଚିଲା । ମନ୍ତ୍ରିପୁଅ କଣ କଲା, ମନପବନଖଣ୍ଡାକୁ ଧରିଲା, କହିଲା

ସତ୍ୟଯୁଗର ଯେମନ୍ତ ମନପବନଖଣ୍ଡା ହୋଇଥିବ, ମୁଁ ପକାଇଦେଲା-କ୍ଷଣି ଖଣ୍ଡା ଯାଇଁ ଜଳଗର ହୋଇ ପଡ଼ିବ । ମନ୍ତ୍ରୀପୁଅ ଏହା କହି ଖଣ୍ଡାକୁ ଛାଡ଼ିଲା ଯେ ଖଣ୍ଡା ଯାଇଁ ଜଳଗର ହୋଇ ପଡ଼ିଲା । ମନ୍ତ୍ରୀପୁଅ ଦଉଡ଼ିଯାଇ ତାର ଜିଭ ନଖ କାଟିକରି ଘେନି ଅଇଲା । ଅଉ ରଜା-ଘରର କଏ ଠିକାଏ ଜଳ ଆଣିଥିଲେ, କଏ ହିଁକାଏ ରୁମ ଆଣିକି ଏମାନେ ସବୁ ଅଣି ରଜାଙ୍କୁ ଯାଇ କହିଲେ, ମୁଁ ମାରିଚି ମୁଁ ମାରିଚି । ମନ୍ତ୍ରୀପୁଅ ଜିଭ ନଖ ରଜାଙ୍କ ପାଖେ ନେଇ ଥୋଇଦେଲା, ରଜା କହିଲେ, ଏଇ ମୋ ଝିଅକୁ ବାହା ହେବ । ମନ୍ତ୍ରୀପୁଅ ମାଲୁଣୀଘରକୁ ଗଲା, ରଜାପୁଅକୁ ଟେଲରୁ ବାହାର କରି ତଳେ ଥୋଇଦେଲା; ମୋହ-ମଣିରୁ ଠିକାଏ ଧୋଇ ରଜାପୁଅ ପାଟିରେ ଦେଲାକ୍ଷଣି ରଜାପୁଅ ଜୀଇ ଉଠିଲା । ମନ୍ତ୍ରୀପୁଅ ରଜାପୁଅକୁ ସଜ କରିଦେଲା, ବାହା ହେବାକୁ ଘୋଡ଼ାଉପରେ ବସାଇଲା, ନିଜେ ଖଣ୍ଡାଧରି ହୋଇ ସାଙ୍ଗରେ ଚାଲି କରି ଗଲା ରଜାଘରକୁ । ରଜାପୁଅ ଉତ୍କଳବର୍ଣ୍ଣୀକି ବାହା ହେଲା; ରଜା ଗୁଡ଼ାଏ ଖୁବ୍ ଦାନ ଯଉତୁକ ଦେଲେ, ରଜାପୁଅ ସବୁ ଘେନିକରି ଅସିଲା । ମନ୍ତ୍ରୀପୁଅ ସାଙ୍ଗେ ଥାଏ, ବାଟରେ ଗୋଟିଏ ପଥର ଚକଡ଼ାଠେଇଁ ରାତି ହେଲା, ସେଇଠେ ସମସ୍ତେ ଶୋଇଲେ । ମନ୍ତ୍ରୀପୁଅ ବରକନ୍ୟାଙ୍କ ପାଲିଙ୍କି ପାଖେ ବେଢ଼କରି ଶୋଇଥାଏ; ପ୍ରଥମ ପହର ରାତି ହୋଇଚି, ଯୋଡ଼ାଏ ସ୍ତ୍ରୀପୁରୁଷ ବାହାରିଲେ । ସ୍ତ୍ରୀ କହିଲା ଆହା ! କି ସୁନ୍ଦର ସ୍ତ୍ରୀପୁରୁଷ ଯୋଡ଼ାଏ ଶୋଇଚନ୍ତି ! ପୁରୁଷ କହିଲା, ସୁନ୍ଦର ହେଲେ କଣ ହେବ, ପୁଅ ତ ମରିବ, ବୋହୂଟି ବିଧବା ହେବ । ସ୍ତ୍ରୀ କହିଲା, ଅହା ! ଏମାନଙ୍କ କାହିଁକି କହିଲ ? ପୁରୁଷ କହିଲା, ବାଟରେ ଯାଉଁ ଯାଉଁ ଗୋଟାଏ ଦେଉଳ ପଡ଼ିବ, ରଜାପୁଅ ପାଲିଙ୍କି ତା ପାଖରେ ଯିବାବେଳେ ଦେଉଳ ଭାଙ୍ଗି ପଡ଼ିବ, ସେ ତା ଉପରେ ପଡ଼ିବ । ଏଥିରେ ଯଦି ବଞ୍ଚି ଥାନ୍ତା, ସେବାଟରେ ନ ନେଇ ଆଉ ଗୋଟାଏ ବାଟରେ ବୁଲାଇ ନିଅନ୍ତା ସେ ରଜାପୁଅ

କଶନ୍ତା । ଏହା ଯେ ଆଉ କାହାକୁ କହିବ ସେ ପଥର ହୋଇଯିବ । ଏହା କହି ସେ ସ୍ତ୍ରୀପୁରୁଷ ଦୋଟି ଉଡ଼ିଗଲେ । ଦ୍ୱିତୀୟ ପହର ଗଛରେ ଆଉ ଦୋଟି ସ୍ତ୍ରୀପୁରୁଷ ବାହାରିଲେ । ସେ ସେମନ୍ତ କଥାବାର୍ତ୍ତା ହେଲେ, ସୁନ୍ଦର ହେଲେ କଣ ହେବ, ପୁଅ ତ ମରିବ, ବୋହୂ ଥାଇକରି କଣ କରିବ ? ରାଜକନ୍ୟା ଘରପାଖରେ ହେଲାକ୍ଷଣି ବାପ କଣ କରିବ ପୁଅ ଭଲ ହୋଇ ଆସୁଛି ବୋଲି ଗୋଟାଏ ହଜାର ଟଙ୍କାର ଘୋଡ଼ା ଆଣି ଠିଆ କରିଦେବ । ସେଟା ତ ମରୁଥିଲା ଘୋଡ଼ା, ପୁଅ ଚଢ଼ିଲାକ୍ଷଣି ଘୋଡ଼ା ଫୋପାଡ଼ି ଦେବ ଯେ ପୁଅ ତ ମରିବ; ବୋହୂ ବିଧବା ହେବ, ଏଥିରେ କିଏ ଚେତା ଥାନ୍ତା କି, ବାପ ଘୋଡ଼ା ଆଣି ଦେଲାକ୍ଷଣି ଏ ଯାଇଥାନ୍ତା, ଘୋଡ଼ା ଗୋଡ଼ଚାରିଟାକୁ କାଟି ହାଣି ଦିଅନ୍ତା । ଏହା ଯେ ଆଉ କାହା ଆଗେ କହିବ ସେ ପଥର ହୋଇଯିବ । ଏହା କହି ସେ ଦୁହେଁ ଉଡ଼ିଗଲେ । ଗଛ ତୃତୀୟ ପହର, ଆଉ ଦୋଟି ସ୍ତ୍ରୀ ପୁରୁଷ ବାହାରିଲେ, ସେମାନଙ୍କ ପର କଥାବାର୍ତ୍ତା ହେଲେ । ପୁରୁଷ କହିଲା ପୁଅବୋହୂ ଘରେ ପହଞ୍ଚିଲାରୁ, ସେମାନଙ୍କୁ ନେଇ ଗୋଟିଏ ପଲଙ୍କ ଘରେ ବସାଇବେ । ସେ ପଲଙ୍କରୁ ଦଶହାତ ଚୁଙ୍ଗପଡ଼ିବ ଯେ ପୁଅ ତ ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଚେତା ଥାନ୍ତା କି, ସେ ପଲଙ୍କରୁ ଆଗକର ଦଶହାତ ହାଣି ପକାନ୍ତା । ଏହା ଯେ କାହା ଆଗେ କହିବ ସେ ପଥର ହେବ । ଏହା କହି ସେ ଦୁହେଁଯାକ ଗଲେ ବାହାରି । ଚତୁର୍ଥ ପହରକୁ ଆଉ ଯୋଡ଼ିଏ ସ୍ତ୍ରୀ ପୁରୁଷ ବାହାରିଲେ । ସେ ସେମନ୍ତ କହିଲେ ଚତୁର୍ଥୀଦିନ ଏ ପୁଅବୋହୂ ଶୋଇଥିବେ, ନାଗନାଗୁଣୀ ଆସି ପୁଅକୁ ଦଂଶିଦେବ ଯେ ପୁଅ ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଚେତାଥାନ୍ତା କି ସେ ଦିନ ସେ ଘରେ ଲୁଚିକରି ଥାନ୍ତା, ନାଗନାଗୁଣୀଙ୍କି ହାଣି ପକାନ୍ତା । ଏହା ଯେ କାହା ଆଗେ କହିବ, ସେ ପଥର ହୋଇଯିବ, ଏହିପରି କହି ଉଡ଼ିଗଲେ । ଗଛ ପାହିଗଲା," ଏ କଥାସବୁ ମନ୍ତ୍ରୀ

ପୁତ୍ର ଶୁଣିଥାଏ, ସମସ୍ତେ ଉଠି ବାହାରିଲେ । ଯାଉ ଯାଉ ବାଟରେ ଖୋଟିଏ ଦେହୁଳ ପଡ଼ିଲା, ରଜାପୁଅକୁ ସେ ବାଟେ ନ ନେଇ ଅନ୍ୟ ଗୋଟିଏ ବାଟରେ ମନ୍ତ୍ରୀପୁଅ ନେଇଗଲା । ସେଠାରୁଁ ଯାଇ ଗାଁଗାଖରେ ପହଞ୍ଚିଲେ । ରାଜା, ପୁଅ ଆସୁଛି ବୋଲି ଶୁଣି ଗୋଟିଏ ଘୋଡ଼ା ପଠାଇ ଦେଲେ । ରଜାପୁଅ ସେ ଘୋଡ଼ାରେ ନ ଚଢ଼ନ୍ତୁ, ମନ୍ତ୍ରୀପୁଅ ତା ଗୃହଠାରୁ କରି ହାଣିଦେଲା । ଏଥିରେ ରଜାପୁଅ ମନେ ମନେ ଭାରି ଚିଡ଼ୁଥାଏ, କିନ୍ତୁ କହିପାରୁ ନ ଥାଏ । ଏମନ୍ତ ସେ ପଲ୍ଲୀଘର-ପାଖକୁ ଆସିଲେ । ରଜାପୁଅ ତା ଭିତରକୁ ଯାଉଛି; ମନ୍ତ୍ରୀପୁଅ ସେ ଘରୁ ଦରଦାଣ୍ଡ ହାଣିପକାଇଲା । ରଜାପୁଅ ଆହୁରି ରାଗୁଥାଏ । ଚତୁର୍ଥୀ ଦିନ ରାତିରେ ରଜାପୁଅ ଆଉ ଉଜ୍ଜ୍ୱଳବତୀ ଶୋଇଥିଲେ, ମନ୍ତ୍ରୀପୁଅ ଖଟତଳେ ଲୁଚିଥାଏ, ଦେଖୁ ନାଗନାଗୁଣୀ ଆସିଲେ, ମନ୍ତ୍ରୀପୁଅ ଖଣ୍ଡା ଧରିଥିଲା ତାଙ୍କୁ ହାଣି ପକାଇଲା । ସେ ଘରୁ ବାହାରି ଆସୁଛି, ଦେଖିଲା ଯେ ଉଜ୍ଜ୍ୱଳବତୀ ଦେହରେ ଟୋପାଏ ରକ୍ତ ଛିଟିକି ପଡ଼ିଛି । ଧଡ଼ପଡ଼ ହୋଇ ପୋଛିଦେଲାବେଳକୁ ଉଜ୍ଜ୍ୱଳବତୀର ନିଦ ଭାଙ୍ଗିଗଲା । ରଜାପୁଅ ଉଠିଲା,ଭାରି ରାଗ କରି କହିଲା, ତୁମେ କାହିଁକି ଏ ଘରେ ପଶିଥିଲ କହ । ମନ୍ତ୍ରୀପୁଅ କହୁଥାଏ ସଙ୍ଗାତ,ମତେ ସେ କଥା ପଚାର ନା, କହିଲେ ପଥର ହୋଇଯିବି । ରଜାପୁଅ କେବେ ମାନିଲା ନାହିଁ, ଭାରି ଜିଦି ଧରିଲା । ମନ୍ତ୍ରୀପୁଅ ଆଉ କଣ କରିବ, ସବୁ କହିଗଲା, ସେଇଠି ପଥର ହୋଇପଡ଼ିଲା । ନିର୍ମଳ ସଙ୍ଗାତକୁ ମୁଁ ପଟରେଇଲି ! ଏହା ଭାବି ରଜାପୁଅ ପାଗଳ ହୋଇଗଲା । ପାଗଳ ହୋଇ କୁଆଡ଼େ ଚାଲିଗଲା । ତାହାର କେତେଦିନେ ରଜାପୁଅର ଗୋଟିଏ ପୁଅ ହେଲା । ରଜାପୁଅ ଏଆଡ଼େ ସେଆଡ଼େ ବୁଲି ବୁଲି ସେହି ସମୀପକୁ ଯାଇ ଦିନେ ରାତିରେ ସେହି ପଥରଟିକଡ଼ା ଉପରେ ଶୋଇ ପଡ଼ିଥିଲା । ରାତି ଅଧ ହେଲାଣି,ଯୋଡ଼ିଏ ସ୍ତ୍ରୀପୁରୁଷ ବାହାରିଲେ, କହିଲେ,ଅହୋ ! ସେ ମନ୍ତ୍ରୀପୁଅଟି ପଥର ହୋଇଯିବାରୁ ଏ ବାପୁ ହୋଇ ଏମନ୍ତ ବୁଲୁଛି,

ଏହାର ଯେମନ୍ତ ଦେହ ହୁଅନ୍ତା; ଏହାର ଗୋଟିଏ ପୁଅ ହୋଇଛି; ସେ ପୁଅକୁ ହାଣନ୍ତା, ସେ ପଥର ଉପରେ ଢାଳି ଦିଅନ୍ତା ତେବେ ମନ୍ତ୍ରି-ପୁଅ ଜୀଇ ଉଠନ୍ତା । ରଜାପୁଅର ସବୁକଥା ଠିକ୍ ହେଲା; ଘରକୁ ଫେରିଯାଇ ସେ ପୁଅଟାକୁ ଗଲା । ତାକୁ ନେଇ ସେ ପଥର ଉପରେ କାଟିଦେବାରୁ ମନ୍ତ୍ରିପୁଅ ଜୀଇଉଠିଲା । ମନ୍ତ୍ରିପୁଅ କହିଲା, ସଙ୍ଗାତ ! କି କଲୁ ?, ମୋ ଛରପାଇଁ ପୁଅକୁ ମାରିଲୁ ? ମୋ ଠେଇଁ ତ ମୋହନମଣି ଅଛି, ତହିଁରୁ ଟିକିଏ ଘୋରିକରି ପୁଅକୁ ପିଆଇ ଦେଲା, ପୁଅ ଜୀଇ ଉଠିଲା । ରଜାପୁଅର ମନ୍ତ୍ରିପୁଅର ଆଗେ ଯେମିତି ଥିଲା ସେହି ପରି ମନ ମିଳିଲା, ରଜାପୁଅ ଉଜ୍ଜ୍ୱଳବତୀକି ନେଇ ସୁଖରେ ଘରଦ୍ୱାର କଲା, ମୁଁ ଗଲିରୁ କଥା ନ କହିଲି । ମୋ କଥାଟି ସରିଲା, ଇତ୍ୟାଦି ।

## ମଉନାବତୀ କଥା ।

ଗୋଟିଏ ରଜାଟିଏ, ତାର ଗୋଟିଏ ପୁଅ । ପୁଅକୁ କନ୍ୟା ଘର ଲୋଡ଼ିଲେ । ପୁଅ କହିଲା ମୁଁ କନ୍ୟାକୁ ଦଶ ବାଡ଼ି ମାରିବି ସେ ଯେବେ ସହିବ ମୁଁ ତେବେ ତାକୁ ବାହା ହେବି । ଯୋଉଁ ରଜା ଏ କଥା ଶୁଣିଲା, ସେ କହିଲା ମୁଁ କାହିଁକି ବାହା କରିବି, ମୋର କଣ ଝିଅକୁ ବର ମିଳୁନାହିଁ ? ଏହିପରି ସମସ୍ତେ ନାହିଁ କଲେ । ସେଆଡ଼ ଦେଶର ରଜାଘରକୁ ଭଲଲୋକ ଗଲେ । ରଜା ନାହିଁ ନାହିଁ ହେଉଥାଏ, ଝିଅ କେମନ୍ତ ଶୁଣିପାରି କହିଲା, ହଉ ମୁଁ ବାହା ହେବି, ବାପା କାହିଁକି ନାହିଁ କରୁଛନ୍ତି । ଝିଅ ଯୋଉଁଠୁ ରାଜି ହେଲା ରଜା କହିଲେ ହଉ ବାହାଘର କର, ଝିଅ ତ ମଙ୍ଗୁଛି ଆମର କଣ ଅଛି ? ବାହାଘର ସରିଲା,

ବରକନ୍ୟା ଘରକୁ ଆସିଲେ, ଚତୁର୍ଥୀଦିନ ରାତ୍ରରେ ରଜାପୁଅ ସେ ରଜାଝିଅକୁ କହିଲା, ମୁଁ ପଣ ତୁମକୁ ଦଶବାଥା ମାରିବି ଆଗ । ରଜାଝିଅ କହିଲା କିଁ ମାରିବ କେ, ମୁଁ କେଉଁ କଥାର ଜବାବ ନା ଯେବେ କରିପାରିବି ତେବେ ମାରିବ । ଏ ପଚାରିଲା କଥାଟି କଣ ? ରଜାଝିଅ କହିଲା, ଯେ ଦେଶର ରଜାଝିଅ ମଜ୍ଜନାବତୀ ଅଛି, ତାକୁ ଯେ କଥା ପୁଛାରିବ ସେ ତାକୁ କହି ଦେବ, ତମେ ଯେବେ ତାକୁ କଥା ପୁଛାରି ପାରିବ, ତେବେ ମତେ ଦଶବାଥା ମାରିବ । କେତେଦିନ ଗଲା, ରଜାପୁଅ ମଜ୍ଜନାବତୀ ଦେଶକୁ ବାହାରିଲା, କେତେ ଦିନପରେ ମଜ୍ଜନାବତୀ ନଗରରେ ପହଞ୍ଚିଲା । ସେଠାରେ ଦୁଇ ଏକ ଦିନ ରହି ମଜ୍ଜନାବତୀପୁରକୁ ଗଲା, କହିଲା ଯାଇ, ତମ ଝିଅ କଣ ଆମକୁ କଥା କହିବେ ନାହିଁ ? ଯାଇ କହିଲା, ଏପରି କେତେ ରଜା ଆସି ବନ୍ଦିଘରେ ପଡ଼ିଛନ୍ତି, କିଛି କହି ପାରି ନାହାନ୍ତି, ସେମାନେ ତ ପଦେ କଥା କେହି କହିପାରିଲେ ନାହିଁ, ଆଜ ତମେ ଗୁଡ଼ାଏ କେବ; ହଉ ଦେଖ । ରାତି ପାହିଗଲା, ଏ ରଜାପୁଅ ଅଉ କଥା କହିପାରିଲା ନାହିଁ, ତାକୁ ନେଇ ବନ୍ଦିଘରେ ରଖିଲେ । ଏଣେ ଏ ରଜାଝିଅ ( ତାର ଭାରିଯା ) ଜଣା କଲା— କେତେ ଦିନ ଚାହିଁଲା(୧), କେଉଁଠୁ ରଜାପୁଅ ନ ଆସିଲା, ସେ ଗୋଟାଏ ମରଦ ବେଶ ଧରିଲା, ଘୋଡ଼ାରେ ଚଢ଼ି ମଜ୍ଜନାବତୀ ଦେଶକୁ ବାହାରିଲା । ଯାଉଛି, ବାଟରେ ଅସୁର ଗୁଡ଼ାଏ ପଶା ଖେଳୁଛନ୍ତି ଯେ କେହି କାହା ପାଶୁ ନାହାନ୍ତି ନ ହାରୁନାହାନ୍ତି । ଝିଅକୁ ଦେଖି ସେମାନେ କହିଲେ, ହେ ! ଆମକୁ ଟିକିଏ ଜିତାଇ ଦିଅ, ଆମେ ତମକୁ ଖାଇବୁ ନାହିଁ । ଏ ସେଠାରେ ବସିଲା, ବାଜିଏ ସେମାନଙ୍କୁ ଜିତାଇଦେଲା, ବାଜିଏ ତାଙ୍କୁ ଜିତାଇଦେଲା, ଏହାପରେ ସମସ୍ତଙ୍କୁ ଖୁସି କରିଦେଲା, ସେଠୁ ବାହାରିଲା, କହିଲା ମୋର ଗୋଟାଏ କାମ ଅଛି, ମୁଁ ଯାଉଛି ।

---

(୧) ଅପେକ୍ଷା କଲା ।

ଏମାନେ କହିଲେ, ଆମକୁ ସାଙ୍ଗରେ ନିଅ, ଆମ୍ଭେ ତୁମର କିଛି ଉପକାର କରିବୁଁ, କହିବାରୁ, ଉଜାଣ୍ଟିଅ ସାଙ୍ଗେ ୨ ଗଲେ । ସାତ ଜଣଯାକ ମନ୍ତ୍ରନାବତୀ ନଗରରେ ପହଞ୍ଚିଲେ । ରଜା ଶୁଣିଲେ, ଏମାନଙ୍କୁ ସବୁ ସିଧା ସରଞ୍ଜାମ ଦେଲେ । ଅସୁର ଗୃହଜଣଙ୍କୁ ଯେତେ ଆଣି ଦେଉଥାନ୍ତି, ସେ କେବେ ମନା କରୁ ନ ଥାନ୍ତି, ଯେତେକ ମାହାଲରେ ପଡ଼ବାପାଡ଼ ଥିଲା ସବୁ ଆଣି ଦେଲେ, ତାକୁସୁଦ୍ଧା କଷାରେ ଖାଇଦେଲେ, ଦଶଭରଣ ଗୃହୁଳର ଭାତ ଖାଇଲେ, ନଈକପାଣି ପିଇ ଗଲେ । ଏହିପରି ଥାନ୍ତି, ଯାଉଁ ସନ୍ଧ୍ୟାବେଳ ହେଲା, ଉଜାଣ୍ଟିଅ ସେମାନଙ୍କୁ କହିଲା, ତୁମେ ଜଣେ ମନ୍ତ୍ରନା-ବତୀର ଖଟ ଖୁରାରେ ରହିବ, ଜଣେ ଦୀପରୁଖାରେ, ଜଣେ ଗୃହଳରେ, ଜଣେ ତା ବେକର ହାରରେ ରହିବ, ମୁଁ ଯେତେବେଳେ ଯାହାକୁ ଯାହା ପଚାରିବ ସେ ତା'ର ଗୋଟିଏ ଅସମ୍ଭବ ଉତ୍ତର ଦେବ । ସଞ୍ଜ ହେଲାରୁ ଉଜାଣ୍ଟିଅ ମନ୍ତ୍ରନାବତୀ ପୁରକୁ ଗଲା, ଧାଈକ ପଚାରିଲା ତମ ଝିଅ କଥା କହିବେ ନାହିଁ ? ଧାଇ ସମସ୍ତଙ୍କୁ ଯେପରି କହେ, ସେହିପରି କହିଲା । ଏ କହିଲା, ହଉ ନ କହନ୍ତୁ, ମୁଁ ଗୋଟିଏ କଥା କହୁଚି, ଶୁଣନ୍ତୁ । ଅସୁରମାନେ ଅଦୃଶ୍ୟ ହୋଇ ଉଜାଣ୍ଟିଅ ଯେମନ୍ତ କହିଥିଲା ସେହିପରି ସେ ଘରଭିତରେ ଥାନ୍ତି । ରାତି ପ୍ରଥମପ୍ରହର, ଉଜାଣ୍ଟିଅ ଗୋଟିଏ କଥା କହିଲା—

## ବେଶ୍ୟା ଓ ଶୁକପକ୍ଷୀ କଥା ।

ଗୋଟିଏ ବେଶ୍ୟାଟିଏ ଯେ ସେ ଗୋଟିଏ ଶୁଆ ପୋଷିଥିଲା । ଦିନ-କର ଶୁଆମେଳ (୧) ହେଲା । ଏ ଶୁଆ ବେଶ୍ୟାକୁ କହିଲା ଆମର

(୧) ଶୁଆମାନଙ୍କର ସଭା

ମେଳ ହେଉଛ, ମା ! ମୁଁ କିବଏ ସେଠାକୁ ଯାନ୍ତି ? ଏ କହିଲା ହେଉ ଯା, ଶୁଆ ଗଲା ମେଳରେ ମିଶିଲା । ମେଳ ଭାଙ୍ଗିବାରୁ ସବୁ ଶୁଆ ଯାକ ଗଲେ ବାହାର । ଏ ଶୁଆ ମନେ ବଗୁରିଲା, ଖାଲି ହାତରେ କଣ ଯିବି, ବେଶ୍ୟାପାଇଁ କିଛି ନ ନେଇଗଲେ ସେ କଣ କହିବ ? ଆଉ ଶୁଆମାନେ କହିଲେ, ତାକୁ କଣ ଅପୂର୍ବ ନେଇ କରି ଦେବୁ ? ନେଲେ ଏହି ବୃଦ୍ଧୀବୟସର (୨) ଫଳରୁ ଗୋଟିଏ ନେ । ଏ ସେହି ଫଳରୁ ଗୋଟିଏ ଆଣି ବେଶ୍ୟାପାଖରେ ପକାଇଦେଲା । ବେଶ୍ୟା ସେ ଫଳକୁ ବାରିଅଡ଼କୁ ଫିଙ୍ଗି ଦେଇଥିଲା ସେ ତହିଁରୁ ଗୋଟିଏ ଗଛ ଉଠି ଏତେବଡ଼ ଗଛ ହୋଇ ସଜଳର (୩) ଫଳ ଫଳି ପାଚିଥାଏ ଗୋଟିଏ ଖୁବ୍ ସୁପାକଲାଟିଏ, ତାକୁ ସାପ ଶୁଙ୍ଘିଦେଇ ଯାଇଥାଏ । ବେଶ୍ୟା ସେହିଟିକି ଆଣିଲା, ଦାଣ୍ଡରେ ଭର୍ତ୍ତିଦେଇ ପାଳେ କାଉଆଡ଼କୁ ପକାଇଦେଲା, କହିଲା ଦେଖେଁ କି ଫଳ ଆଣିଛି । କାଉ ସେ ଫଳକୁ ଯେମନ୍ତ ଖାଇଲା, ସେମନ୍ତ ମରିଗଲା । ବେଶ୍ୟା କହିଲା ହଁ। ମତେ ମାରିବାକୁ ବଗୁରି କରିଥିଲା । ଏହା କହି କାଠେ ପକାଇଲା ସେ ବୁଅଟି ମରିଗଲା । ତହିଁର କେତେଦିନେ ଧୋବଣୀଟିଏ ସେ ତାର ସ୍ୱାମୀ ତାକୁ ମାରିଥାଏ, ସେ ବେଶ୍ୟାବାରିର ସେହି ଫଳରୁ ଗୋଟାଏ ଖାଇ ମରିବାକୁ ବିଚାର କରିଥାଏ । ବେଶ୍ୟାଘରକୁ ଲୁଗା ଦେବାକୁ ଆସିଲାବେଳେ ସେ ଫଳରୁ ଗୋଟାଏ ଖାଇଦେଲା, ଖାଇଦେଲାକ୍ଷଣି ତାର ଯୁବାବୟସ ହୋଇଗଲା । ବେଶ୍ୟାକୁ ଡାକିଲା, ଲୁଗା ନିଅ, ବେଶ୍ୟା ଆଉ ଚିହ୍ନିପାରିଲା ନାହିଁ, କହିଲା ତୋ ଶାଶୁକୁ ନ ପଠାଇ ତୁ ଆଇଲୁ କହିଁକି ? ଏ କହିଲା ନାହିଁ ଧାନ୍ୟାଣୀ । ମୋ ବୋହୂ ଆସିନାହିଁ ମୁଁ ଆସିଛି, ମୁଁ ତମର ବାରିର ଝଷଫଳ

---

(୨) ସେ ଫଳ ଖାଇଲେ ବୃଦ୍ଧାବସ୍ଥା ଲୋପ ହୋଇ ଯୁବା ହେବାରୁ ହୁଏ

(୩) ଅପର୍ଯ୍ୟାପ୍ତ ।

ଖାଉଥିଲି ମରିବି ବୋଲି, ଏମନ୍ତ ହୋଇଗଲି । ବେଶ୍ୟା କହିଲା ଆହା । ମୁଁ କଣ ଜାଣି, ଶୁଆଟିକୁ ମୋର ମିରିଚ ମାରି ପକାଇଲି । ମୋର ଝମା ପାଇଁ ବୁଢ଼ୀବିଷ୍ଣୁଙ୍କର ପାନ ଆଣି ଥିଲି ! ଏହାପରେ ଲୋକେ ସନ୍ତାପି ହେଲେ, ଆଉ କଣ କରିବ, ସ୍ଥିର ହୋଇ ରହିଲେ । ଏ କଥାଟି କହିସାରି ରଜାଝିଅ କହିଲା, କହିଲୁ ହେ ଖଟଖୁରା, ଏଥିରେ କାହାର ଦୋଷ ? ଖଟଖୁରା କହିଲା ଏଥିରେ ଶୁଆର ଦୋଷ । ମଉନାବତୀଥିଲା କହିଲା, ମୋ ଖଟଖୁରା ହୋଇ ତୁ ଏମନ୍ତ କଥା କହୁଚୁ ? ଏଥିରେ ବେଶ୍ୟାର ଦୋଷ । ରଜାଝିଅ ସେଉଠୁ କହିଲା, ଶୁଣି ଥାଅ ହୋଧାଇ, ତମଝିଅ ପ୍ରଥମପ୍ରହରର କଥା କହିଲେ । ଏହାପରେ ଦ୍ୱିତୀୟପ୍ରହରର ରଜାଝିଅ ଆଉ ଗୋଟିଏ କଥା କହିଲା ।—

## ମହାଜନ ଓ କୁକ୍କୁରର କଥା ।

ଗୋଟିଏ ମହାଜନଟିଏ ସେ ସେ ରଜାପୁଅ ସଙ୍ଗେ ସଙ୍ଗାତ । ସେ ଗୋଟିଏ କୁକ୍କୁର ପୋଷିଥିଲା । ରଜାଙ୍କ ନଅରରେ ଭାରି ଚୋର ଗୋଲମାଲ ଲାଗିଲା । ରଜାପୁଅ କହିଲା ହେ ସଙ୍ଗାତ ! ତମ କୁକ୍କୁରକୁ ଟିକିଏ ଅଠଦିନ ପକାଣେ ଦିଅନ୍ତ କି, ନଅରରେ ଚୋର ଗୋଲମାଲ ଲାଗିଚି, ନହେଲେ ଦିଅନ୍ତ୍ୟା, ଚୋର ଗୋଲମାଲ ଗଲେ ତମ କୁକ୍କୁରକୁ ପଠାଇଦିଅନ୍ତି । ମହାଜନ ରଜାପୁଅ ସାଙ୍ଗେ କୁକ୍କୁରକୁ ପଠାଇଦେଲା, କୁକ୍କୁର ଦି ଚାରିଦିନ ରହି ରଜାଙ୍କ ନଅରରୁ ଚୋରଙ୍କୁ ଘଉଡ଼ାଇ ଦେଲା, ଅଉ ଜମା ପୂରାଇଦେଲେ ନାହିଁ । ଚୋର ଗୋଲମାଲ ଭାଙ୍ଗିଲାରୁ ରଜାପୁଅ କୁକ୍କୁରବେକରେ ଖଣ୍ଡେ ଚିଠି ଲଟକାଇଦେଲା । ଛନୋଟି ଟଙ୍କା ବାନ୍ଧିଦେଲା, କହିଲା ଯା, ତୋ ସାନ୍ତ ପାଖକୁ, ଏହା କହି ଅଠଦିନ ପୂରନାହିଁ ପଠାଇଦେଲା । ମହାଜନ ସ୍ୱାନ୍କୁ ଦେଖି ମନେ କଲା ଏ ବାହାରି ଆସିଲା, କହିଲା ନିମକହାରାମ କୁକ୍କୁର ତୁ ପଳାଇଥିଲୁ, ଏହା କହି ଠେଙ୍ଗାଏ ଦେଲା ଯେ କୁକ୍କୁରଟି ମରିଗଲା ।

ପରେ ଦେଖେ ଯେ ସ୍ତ୍ରୀ ଦେଉଳରେ ଖଣ୍ଡେ ଛତି ଲଟକିଛି, ପଣ୍ଡିଲୁ-
ଦେଲକୁ ନଜାଣିଥି ଲେଖିଲା ମେ କୁକ୍କୁର କାର୍ଯ୍ୟସାଧନ କଲା ନାହିଁ ।
ମହାଜନ ଦଣ୍ଡ ଭୋଗିଥିଲାଦେଲା ( ୧ ) ଆଦି ଜିଣି ଯାଉବ, ଆମ୍ଭେ
ଜାଉଛି, ଭୁଜ ହୋଇ ରହିଲା । ଏହା କହିସାରି ରଜାଝିଅ ପଚାରିଲା
ଗୁଳ, କହିଲୁ ଏଥିରେ କାହାର ଦୋଷ ? ଗୁଳ କହିଲା କୁକ୍କୁରର
ଦୋଷ । ଏହା ଶୁଣି ମଞ୍ଜୁନାବତୀ କହିଲା ଊଁ କୁକ୍କୁରର କଅଣ ଦୋଷ
ହେଲା ? ମହାଜନର ଦୋଷ ହେଲା ନା । ଏ କହିଲା ଶୁଣିଥାଅ । ହୋ
ଯାଉ, ତମ ଝିଅ ଆମକୁ ଦ୍ୱିତୀୟ ପହରର କଥା କହିଲେ । ତୃତୀୟପହର
ରଜାଝିଅ କହିଲା—

## ବ୍ରାହ୍ମଣୀ ଓ ନେଉଳର କଥା ।

ଗୋଟିଏ ବ୍ରାହ୍ମଣୀ ନେଉଳଟିଏ ପୋଷିଥାଏ । ସେ ଦୁଃଖ
ଧନ୍ଦାରେ ଗଲାବେଳେ ନେଉଳକୁ ପୁଅକୁ ଜଗାଇ ଦେଇ ଯାଏ ।
ଦିନେ ସେ କାହାଘରେ ଧାନ କୁଟିବାକୁ ଗଲା, ନେଉଳକୁ
କହି ଗଲା ମୋ ପୁଅ ଏଠାରେ ଶୋଇଛି, ତାକୁ ଜଗିଥିବୁ ।
ନେଉଳ ଜଗିଥିଲା, ଟିକିଏ ଶୋଇପଡ଼ିଲା । ଏହି ସମୟରେ
ସାପ ଆସି ପୁଅକୁ ଦଂଶିଦେଲା । ନେଉଳର ନିଦ ଭାଙ୍ଗିଗଲା,
ଅନାଇଁ ଦେଖେ ଯେ ସାପ ଚାଲିଯାଉଛି, ପୁଅ ମରି ପଡ଼ିଛି । ନେଉଳ
ଧଡ଼ପଡ଼ ହୋଇ ଉଠି ଆଗ ସାପକୁ ମାରି ପକାଇଲା, ନେଉଳକୁ ଆଡ଼େ
ଘୋଡ଼ାଇ ଦେଲା, ବଣକୁ ଯାଇ ଅମର ଗଦ ଔଷଧ ଆଣୁଛି ପୁଅକୁ
ଖୁଆଇ ବଞ୍ଚାଇବ ବୋଲି ବ୍ରାହ୍ମଣୀ ଆସି ପହଞ୍ଚିଲା, ଦେଖିଲା ଯେ
ପୁଅ ମରିଛି, ନେଉଳ ରକ୍ତ ସର ସର ( ୨ ) ହୋଇଛି, ମନେ କଲା

( ୧ ) ମଣାପିଦେହକୁ, ଦଧସ୍ତ ଦେହଲା ।　　। ଲଗାଇ ।

ଏହି ମୋ ପୁଅକୁ ମାରିଛି ବୋଲି, ପ ହାତରେ ପକାଇଲା ସେ ନେଉଳଟି ମରିଗଲା, ତା ପାଖରୁ ଖଣ୍ଡେ ଚେର ଖସିପଡ଼ିଲା ଗର୍ଭୀବ୍ରାହ୍ମଣୀ ସେ ଚେର ଖଣ୍ଡି ନେଇ ଯାଇ ପୁଅକୁ ପିଆଇଦେଲା ସେ ପୁଅ ବଞ୍ଚିଉଠିଲା । ଗର୍ଭୀବ୍ରାହ୍ମଣୀ କହିଲା ଆହା ! ମୁଁ ନେଉଳକୁ କାହିଁକି ମାରିଲି, ସେ ତ ମୋ ପୁଅପାଇଁ ଔଷଧ ଆଣିଥିଲା । ଏହା କହିଲା, ବଡ଼ ବ୍ୟସ୍ତ ହେଲା, ରହିଲା । ଏହା କହି ରଜାପୁଅ କହିଲା, କହିଲୁ ହେ ପାପରୁଖା, ଏଥିର କାହାର ଦୋଷ ହେଲା ? ପାପରୁଖା କହିଲା ନେଉଳର ଦୋଷ । ଏଥିରେ ମଉନାବଜା ରାଗିଯାଇ କହିଲା କଣ, ନେଉଳର ଦୋଷ ହେଲା ? ମୋ ପାପରୁଖା ହୋଇ ଏମନ୍ତ କହୁଛୁ ! ଏଥିରେ ଗର୍ଭୀବ୍ରାହ୍ମଣୀ ଦୋଷୀ । ଏ ସେହୁଠୁଁ କହିଲା ଦେଖୁଥାଅ ହୋ ଯାଇ, ତମହିଁ ଅମଙ୍କୁ ତୃତୀୟପହରର କଥା କହିଲା । ଏହି ପର ଚତୁର୍ଥପହରର ରଜାପୁଅ ଅଉ ଗୋଟିଏ କଥା କହିଲା । ସେ କଥାଟି ଏହି—

## ଚାରି ସଙ୍ଗାତ କଥା ।

ଗୋଟିଏ ଦେଶରେ ରଜାପୁଅ, ସୁନାରିବଣିଆପୁଅ, ବଢ଼େଇପୁଅ, ତନ୍ତ୍ରୀପୁଅ ଏ ଚାରି ସଙ୍ଗାତ । ଏ ହେଲେକର ବିଦେଶ କରି ବାହାରିଲେ ଯାଉ ଯାଉ ଗୋଟିଏ ବନସ୍ତରେ ରାତ୍ର ହେଲା, ସେଠାରେ ରହିଲେ, ପହରକୁ ପହର ଜଣେ ଲେଖାଁ ଜଗି ବସିଲେ, ଆଉ ସମସ୍ତେ ଶୋଇଲେ । ପ୍ରଥମ ପହରେ ବଢ଼େଇର ପାଳି ପଡ଼ିଲା, ସେ ନିଦିଆଏ, ଖଣ୍ଡିଏ କାଠରେ ଗୋଟିଏ କନ୍ୟାଟିଏ ଗଢ଼ିଲା, ଦ୍ୱିତୀୟ ପହରେ ସୁନାରିବଣିଆର ପାଳି, ସେ ସେ କନ୍ୟାଟିକି ଗୁଡ଼ିଏ ଅଳଙ୍କାର ପିନ୍ଧାଇଦେଲା । ତୃତୀୟ ପହରେ ତନ୍ତ୍ରୀପୁଅ ଜଗିଲା, ସେ କନ୍ୟାଟିକି ଲୁଗାପିନ୍ଧାଇଲା । ଚତୁର୍ଥପହରେ ରଜାପୁଅର ପାଳି ପଡ଼ିଲା, ସେ କନ୍ୟାଟିକୁ ଜୀବଦାନ ଦେଲା । ଏହାପରେ ସମସ୍ତେ କହିଲେ, ଗଢ଼ ପାଇଲା, କନ୍ୟା-

ଟିକୁ ଦେଖି ସମସ୍ତେ ଲୋକ ବଳାଇଲେ । ଏହା ଶୁଣି ରଜାଝିଅ କହିଲା, କହିଲୁ ଦେ ଦାର ଯେ କନ୍ୟାକୁ କିଏ ନେବ ? ମଞ୍ଜନାବତୀ ବେକର ଦାର କହିଲା ନେଲେ ନେବ ରଜାପୁଅ, ନହେଲେ ବଢ଼େଇ-ପୁଅ । ମଞ୍ଜନାବତୀ କହିଲା ଉଁ । ତୁ ମୋର ହୋଇ ଏଡ଼େ ଅନ୍ୟାୟ କଥା କହୁଚୁ ! ବଢ଼େଇପୁଅ, ରଜାପୁଅ କେମନ୍ତ ନେବେ ? ବଢ଼େ-ଇର ଜନ୍ମଦାତା, ରଜାପୁଅର ଜୀବନଦାତା, ଏ ଦୁହେଁ କିପରି ନେବେ ? ନେଲେ ନେବ ବଣିଆପୁଅ, ନଇଲେ ତନ୍ତିପୁଅ । ଏ କହିଲା ଶୁଣିଥାଏ ହୋ ଧାଈ ତମ ଝିଅ ଆମକୁ ଗୂଢ଼ ପଦର୍ଯ୍ୟାକ କଥା କହିଲେ । ରଜା ପାଇଲା, ଏ ଗୂଢ଼ ଅପୁତ୍ର ତାଙ୍କ ସୂତରେ (୧) ଚାଲିଗଲେ । ଏ ରଜା-ଝିଅ ରଜାଙ୍କ ପାଖକୁ ଗଲା, କହିଲା ତମ ଝିଅ ଆମକୁ କଥା କହିଚନ୍ତି । ଧାଈଙ୍କ ଉକସ ହେଲା, ଧାଈ କହିଲା ହଁ କଥା କହିଚନ୍ତି । ରଜା-କହିଲେ ଆଉ ବିଳମ୍ବ କାହିଁକି, ବିଭାଘର ହେଉ । ରଜାଝିଅ କହିଲା ହଉ ବିଭାଘର ହେବ ଯେ ଆଗେ ଆପଣଙ୍କ ବନ୍ଦିଶାଳାରେ ଯେତେକ ବନ୍ଦୀ ହୋଇଚନ୍ତି ତାଙ୍କୁ ମୁକୁଳାଇ ଦିଅନ୍ତୁ । ରଜା ଆଜ୍ଞା ଦେଲେ ମୁକୁଳାଇବାକୁ, ସମସ୍ତେ ମୁକୁଳି ଗଲେ । ଏ ରଜାଝିଅର ଯେ ବର, ତାକୁ ଏ ସୂତ୍ରରେ ଡାକି କହିଲା ହେ ମୁଁ ମଞ୍ଜନାବତୀଙ୍କ କଥା କୁହା-ଇଚି, ରଜା ମତେ ତାକୁ ବାହା କରଦେବାକୁ ବସିଚନ୍ତି, ମୁଁ ତାକୁ ଛାଡ଼ି ଦେବି ନାହିଁ, ତେବେ ତାକୁ ବିଭା ହୁଅ, ମୁଁ ତମ ପାଖେ ଭଣ୍ଡାର ହୋଇଯିବି । ସେହିପରି ଯିବୁ ହେଲା, ରଜାପୁଅ ମଞ୍ଜନାବତୀକୁ ବିଭା ହେଲା, ବହୁତ ଦାନ ଯୌତୁକ ଦିଆଗଲା, ଘରକୁ ଆସିଲା । ତା ଆଗ ଭାରିଯା ଭଣ୍ଡାର ବେଶ ହୋଇ ତା ପାଖେ ସଙ୍ଗେ ଥାଏ । ଦିନେ ବାଟରେ ଏ ହଠାତ୍ ଭଣ୍ଡାର ବେଶ ଛାଡ଼ି ନିଜରୂପ ଧରି ରଜାପୁଅ ପାଖରେ ପହଞ୍ଚିଲା, ରଜାପୁଅ ଦେଖି କାବା ହୋଇଗଲା, କହିଲା

(୧) ଗୋପନରେ, କୌଶଳରେ ।

ତେମେ କିପରି ଏଠାକୁ ଆସିଲ ? ଏ କହନ୍ତି ଶମ ବାହାଘର ଦେଖି-ବାକୁ ଆସିଥିଲି । ରଜାପୁଅଟି ଏ ଗଳ୍ପ କିଛି ଜାଣିନା, କହନ୍ତି ଏବେ ତ ମଉନାବତୀଙ୍କ ବଡ଼ ହୋଇ ଆସିଲି, ତମକୁ ଦଣ୍ଡବାଧା ମାରିବାର ମୋର ଯାବନ୍ତି । ଏ କହନ୍ତି ଚଟକଣା ଖାଇ ରହୁ ନାହିଁ ଯେ ଫେର୍ କହୁଚ ? ତେମେତ ମୋ ଯୋଗେ ବନ୍ଧଘରୁ ମୁକୁଳିଲ, ନଇଲେ ସେଇଠି ଥାନ୍ତ, ତେମେ କଣ ମଉନାବତୀଠାରୁ କଥା କୋଇଚ ? ରଜାଝିଅ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା, ରଜା-ପୁଅ ଶୁଣି ବଡ଼ ଖୁସି ହୋଇ । ଅଗୁରୁ ଗୁରୁଙ୍କି ବିଦା କରି ଦେଲେ, ରଜାପୁଅ ହ ଭାରିଯାଙ୍କୁ ନେଇ ସୁଖରେ ରହିଲା, ମୁଁ ଗଲିଲୁ କଥା ନ କହିଲି । ମୋ କଥାଟି ସରିଲା ଇତ୍ୟାଦି ।



## ସୁନାଫୁଲ କଥା ।

ଗୋଟିଏ ମନ୍ତ୍ରୀଟିଏ, ତାର ସାତ ପୁଅ ସାତ ବୋହୂ, ସୁନାଫୁଲ ବୋଲି ଗୋଟିଏ ଝିଅ । ସେ ଝିଅ ସୁନାଫୁଲ ଫୁଟେ । ଭାଉଜମାନଙ୍କୁ ଦିନକର ସୁନାଫୁଲ କହିଲା, ହେ, ମୁଁ ସୁନାଫୁଲ ଫୁଟିବି, ତେମେମାନେ କଣ କରିବ; ଘରେ ବାଖୁରିଏ ଲିପିଆଣିବ, ଗାଡ଼ୁଟିଏ ନେଆସିବ, ମୁଁ ସେଥିରେ ବସିବି, ମୋ ଉପରେ ମାଈ ଢାଳି ଦେବ, ହଳଦୀ ପାଣି ମୁଠିଏ ଛିଞ୍ଚିଦେବ, କହିବ ଫୁଟ ଗୋ ସୁନାଫୁଲ ଫୁଟ । ଫୁଟି ସାରିଲାରୁ ସେହିପରି ହଳଦୀପାଣି ମୁଠିଏ ଛିଞ୍ଚି ଦେବ, କହିବ ଉଠ ଗୋ ସୁନାଫୁଲ ଉଠ । ଭାଉଜମାନେ ସେହିପରି କଲେ । ସୁନାଫୁଲ ହଜ୍ୟସ୍ଥନର

ଫୁଲଗଛଟିଏ ହେଲା, ସେ ସବୁଯାକ ଫୁଲ କଢ଼ି ହୋଇ ପଡ଼ିଲା । ସାତ ଭାଇ ଜଣଯାକ ଗଲେ, ଡାଳପତ୍ର କିଛି ଲାଗିଲେ ନାହିଁ, ସାନ-ମାନଙ୍କ ପାଖେ ସାତଟି ସୁନାଫୁଲ ପାଖେ ଯୋଉଠିଏ, ଆଉ ଫୁଲ ବୋଲିଲେ, ହଳଦି ପାଣି ମୁଠାଏ ଛିଞ୍ଚି ଦେଲେ, କହିଲେ ଉଠ ଗୋ ସୁନାଫୁଲ ଉଠ । ସୁନାଫୁଲ ଉଠି ବସିଲା । ସେ ସୁନା-ଫୁଲରୁ ସଳଯା ସାଉଁଟି ଲଗାଇଲେ, ସୁନାଫୁଲକୁ ଗୋଟିଏ ଦେଲେ, ରହିଲେ । ଦିନକର ସାତ ଯାକ କହିଲେ ଆଜି ନଈକି ଗାଧୋଇ ଯିବା, ଘର ଜଗିଏ ଥାଉ, ସମସ୍ତେ ଗାଧୋଇବାକୁ ଗଲେ । ସମସ୍ତେ ଗାଧୋଇ ଆଇଲେ, ସାନବୋହୂ ଘର ପାଛୁ ଯାଉଛି ବୋଲି ଧଡ଼ପଡ଼ ହୋଇ ଗାଧୋଇ ଚାଲି ଆସିଲା ବେଳକୁ, ତା ମୁଣ୍ଡରୁ ସୁନା-ଫୁଲଟି ଖସି ପଡ଼ିଲା କେତେବେଳେ, ସେ ଅଜ ଜାଣେ ନାହିଁ । ରଜାଙ୍କ ହାତୀ ପାଣି ପିଇବାକୁ ଆସିଥିଲା ନଈକି, ପାଣି ପିଉଁ ପିଉଁ ସେ ସୁନା—ଫୁଲଟିକି ଦେଖିଲା, ତାକୁ ନେଇକରି ଦାନ୍ତରେ ଯାକି ଥାଏ; ଆଉ ଖାଇଲା ନାହିଁ କି ପିଇଲା ନାହିଁ, ସବୁବେଳେ ଝୁରି ହେଉଥାଏ । ଝୁରି ଝୁରି ହାତୀର କଣ୍ଠା ରହିଲା । ଦିନକର ରଜା କହିଲେ ହାତୀଟି କାହିଁକି ଜମା ଖାଉ ନାହିଁ ଝଡ଼ି ଗଲାଣି, ଏହା କହି ତାକୁ ଅଣାଇଲେ ଆଉଁସୁ ଆଉଁସୁ ହାତୀ ରଜାଙ୍କ ହାତରେ ସୁନାଫୁଲଟିକି ପକାଇଦେଲା । ରଜା ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ, ମନ୍ତ୍ରୀଙ୍କି କହିଲେ ମନ୍ତ୍ରୀ, ଏ ଫୁଲ କୋଉଠୁ ଆସିଲା, ତେମେ ଯେବେ ଏ ଫୁଲରୁ କାଲିକି ଭିତରେ ଦେବ ତ ଦେବ, ନଇଲେ ତମ ବଂଶ ହେବ ନାହିଁ । ମନ୍ତ୍ରୀ ବଡ଼ ଭାବନାରେ ପଡ଼ିଲା, କହିଲା ମୁଁ ଏବେ ସୁନାଫୁଲ ଭିତରେ କୋଉଠୁ ଆଣିବି । ଦୁଃଖି ହୋଇ ଘରକୁ ଗଲା, ଖାଇଲା ନାହିଁ ପିଇଲା ନାହିଁ, ଗୋଟିଏ ଘରେ ଭାବନାରେ ଶୋଇଲା । ପୁଅମାନେ ବୋହୂମାନେ ଡାକିବାକୁ ଗଲେ, ଜମା ଶୁଣିଲା ନାହିଁ କି କଥା କହିଲା ନାହିଁ । ସବା ଶେଷରେ ସୁନା-ଫୁଲ ଡାକିଲା । ଏ କହିଲା ଆଜି ଖାଇଦେଲ ବଣ ହେବ, କାଲିକି

ବଣଯାକର ମୁଣ୍ଡ କଟା ହେବ । ସୁନାଫୁଲ କହିଲା ଏମନ୍ତ କଥା କାହିଁକି କହୁଚ ବାପା ? ମନ୍ତ୍ରୀ କହିଲା ରଜାଙ୍କ ଅନୁଜ୍ଞା ମଣା, ହୁକୁମ କରଚନ୍ତି ମୁଁ କାଲିକି ସୁନାଫୁଲ ଭାରେ ଦେବ, ନଇଲେ ସବଂଶରେ ମରିବ ! ସୁନାଫୁଲ କହିଲା ଏହି ଛାରକଥା ପାଇଁ ଏତେ ଭାବନା ! ଭାରେ କାହିଁକି, ସାତଭାର ନେବେ । ମନ୍ତ୍ରୀ ଶୁଣି ଟିକିଏ ଆଶ୍ଚର୍ଯ୍ୟ ହେଲା । ସମସ୍ତେ ଖାଇପିଇ ସାରିଲେ, ସୁନାଫୁଲ କଣ କଲା, ଭାରିକ-ମାନଙ୍କୁ ଡାକି ନେଇ ଗୋଟିଏ ଘର ଲିପାଇ ଆଣିଲା । ସେହି ଘରେ ତାଙ୍କୁ ପୋତିଦେଲେ, ହଳଦିପାଣି ଛିଞ୍ଚିଦେଲେ, କହିଲେ ଫୁଟ ଗୋ ସୁନାଫୁଲ ଫୁଟ । ସେ ଦିନ ବହୁତ ଫୁଲ ଫୁଟିଲା, ସବୁ ଯାକ ଫୁଲ ତୋଳି ଗଦା କଲେ, ଶେଷକୁ ହଳଦି ପାଣି ମୁଠାଏ ଛିଞ୍ଚିଦେଲେ, କହିଲେ ଉଠ ଗୋ ସୁନାଫୁଲ ଉଠ; ସୁନାଫୁଲ ଉଠିବସିଲା । ସବୁ ଫୁଲଯାକ ଭାର ୨ କରି ସଜାଡ଼ି ଦେଲେ, ସାତଭାର ଫୁଲ ହେଲା, ତାକୁନେଇ ମନ୍ତ୍ରୀ ରଜାଙ୍କ ଦୁଆରେ ଥୋଇଦେଲା । ରଜା ଦେଖି ବଡ଼ ଖୁସି ହେଲେ, ବୁଝି ୨ ବୁଝିଲେ ଯେ ମନ୍ତ୍ରିଝିଅ ନଜେ ସୁନ ଫୁଲ ଫୁଟେ । ରଜା କହିଲେ ମନ୍ତ୍ରୀ ଆମେ ତମ ଝିଅକୁ ବିଭା ହେବା । ମନ୍ତ୍ରୀ କହିଲା ଆପଣଙ୍କୁ ଯେବେ ସୁନ୍ଦର ଦିଶିଲା ତେବେ ବିଭାଘର ହଉ । ରଜା ମନ୍ତ୍ରିଝିଅ ସୁନାଫୁଲକୁ ବିଭା ହେଲେ । ସେ ରଜାଙ୍କର ଆଉ ସାତ ରାଣୀ ଥାନ୍ତି, ମନ୍ତ୍ରିଝିଅକୁ ବିଭା ହେବାରୁ ସେମାନଙ୍କୁ ଆଉ ରଜା ଦେଖି ପାରିଲେ ନାହିଁ ଏଇଯାକୁ ଭଲ ଦେଖି ପାରିଲେ । ଦିନକର ରଜା ପାରିଧିକି ଗଲେ, ମନ୍ତ୍ରିଝିଅକୁ କହିଗଲେ ତମ ସଉ-ତୁଣୀମାନେ ଯେବେ ଫୁଲ ଫୁଟିବାକୁ ଲଗାଇବେ, ତେବେ କେବେ ଫୁଟିବ ନାହିଁ, ତମକୁ ବାଦରେ ମାରି ପକାଇବେଟି । ମନ୍ତ୍ରୀ ଝିଅ ନାହିଁ କଲା । ରଜା ଯୋଉଠୁ ଗଲେ ବାହାରି, ଏ ସାତ ସଉତୁଣୀଯାକ ଆସି, ଝିଅ ସଙ୍ଗେ ଲଗାଇଲେ ତମେ କେମନ୍ତ ସୁନାଫୁଲ ଫୁଟ ଆଜ ଟିକିଏ ଫୁଟିବଟି, ଆମେ ଦେଖିବା, ଏହାକହି ଝିଅ ସଙ୍ଗେ ଏକ ଜିଦ୍

ଲଗାଇଲେ, ତାର ମାଂସ ନିୟମ ପକାଇଲେ । ଏ କହିଲା ହଉ
ଫୁଟିବି, ତେବେ ଯେତେଜଣ ସେଠାରେ ତୋଳିବ ଆଉ କଉ କ୍ଲିଶ୍ରା-
ଇବ ନାହିଁ କି ତାଙ୍କୁ ଭାଙ୍ଗିବ ନାହିଁ । ଏହା କହିଲା, ଗୋଟିଏ ଘର-
ଟିଏ କପାଟୋଣ୍ଡ କରଇ ସେହିପରି ଫୁଲ ଫୁଟିଲା; ଏ ସବୁ ବାହାରେ
ଫୁଲଗଛ କ୍ଲିଶ୍ରାଳ ପକାଇଲେ, ଡାଳ ସବୁ ଭାଙ୍ଗି ଭାଙ୍ଗି ନଈକି ପକାଇ-
ଦେଲେ । ଏ ଡାଳ ସବୁ ଭାସି ଭାସି ଯାଇ ଯେଉଁଠାରେ ରଜା
ଗାଧୋଉଥିଲେ ତାଙ୍କର ହାତରେ ଲାଗିଲା । ରଜା ତାକୁ ଦେଖି
ବଡ଼ ବେସ୍ତ ହେଲେ, କହିଲେ ମୁଁ ଏତେଦିନ କଥା ଅସିଥିଲି, ଏ
ଫୁଟିଲା । ସଉତୁଣୀମାନେ ବାହାରେ ଡାଳପାଳ ଭାଙ୍ଗି ଫିଙ୍ଗି ଦେଇ-
ଛନ୍ତି । ରଜା ସେହିଲଗେ ବାହାର ଅଧିଲେ ସେଠାରୁ ଘରକୁ ।
ଘରେ ଅସି ଦେଖନ୍ତି ଯେ ସୁନାଫୁଲ ନାହିଁ । ଅଉ ଭଉଯାମାନଙ୍କୁ
ପଚାରିବାରେ ସେମାନେ ସମସ୍ତେ କହିଲେ, ଅମେ ଦେଖିନାହୁଁ ।
ରଜା ବଡ଼ ମନଦୁଃଖରେ ସେ ଡାଳପତ୍ରଗୁଡ଼ିକ ନେଇ ଗୋଟିଏ
ଅରଣ୍ୟରେ ଯାଇ କାନ୍ଦିଲେ । କାନ୍ଦୁଛନ୍ତି ବସି, ରାତି ଅଧ ହେଲାଣି,
ଈଶ୍ୱର ପାର୍ବତୀ ଉଡ଼ି ଯାଉଥିଲେ; କାନ୍ଦଣା ଶୁଣିଲେ । ପାର୍ବତୀ
କହିଲେ ଆଜି କାହିଁକି ପୃଥିବୀଟା ଭାରି ଭାରି ଲାଗୁଚି, ଏ ଅରଣ୍ୟରେ
କିଏ ଗୋଟିଏ ଶୋକ କଲାପରି ଶୁଭୁଚି, ଚାଲ ଯିବା ଦେଖିବା ।
ଈଶ୍ୱର କହିଲେ ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ
ଆମେ ଅଉ ତେବେ ସୃଷ୍ଟି ରଖିଛନ୍ତୁ କାହିଁକି କଷ୍ଟ ବୁଝିବା ନାହିଁ,
ଅଉ ଆମର ସୃଷ୍ଟିରେ ଅଛି କଣ ? ଈଶ୍ୱର କହିଲେ ହଉ ତେବେ
ଦେଖି ଅସିବା ଚାଲ । ଈଶ୍ୱର ପାର୍ବତୀ ଦୁହେଁ ଯାଇ ଗଲେ, ରଜାଙ୍କୁ
ପଚାରିଲେ ତୁ କିଏ ଭୂତ କି ପ୍ରେତ, ଏଠି ବସି କାନ୍ଦୁଚୁ କାହିଁକି ?
ରଜା କହିଲେ ମୁଁ ଏ ଦେଶର ରଜା; ଏମନ୍ତି ମୋ ସାନଭାରିଯାକୁ
ସଉତୁଣୀମାନେ ମାରି ପକାଇଛନ୍ତି ମୁଁ ତାକୁ ନେଇ ଏଠାରେ
କାନ୍ଦୁଚି । ଈଶ୍ୱର ପାର୍ବତୀଙ୍କର ଦୟା ହେଲା, କହିଲେ ତେଣିକି

ମୁହଁବୁଲା । ରଜା ତେଣିକି ମୁହଁ ଫେରାଇଲେ, ଈଶ୍ୱର ପାଙ୍ଗା ଫୁଲପାଣି ଜଉ ଉଦନମୁଠା ଛିଞ୍ଚିଦେଲେ ସେ ସୁନାଫୁଲ ଗଛ ହୋଇଲା । ଈଶ୍ୱର ପାଙ୍ଗା ଉଭେଇ ଗଲେ । ରଜା ସୁନାଫୁଲକୁ ଘିନି ଘରକୁ ଆସିଲେ, ବଡ଼ ସାତରାଣୀଙ୍କି ଖଣି ଖୋଳାଇ ଭିତରେ ପକାଇ-ଦେଲେ, ତଳକଣ୍ଟା ଉପରକଣ୍ଟା ପୋତିଦେଲେ । ସୁନାଫୁଲକୁ ନେଇ ଆନନ୍ଦରେ ଘରଦୁଆର କଲେ, ମୁଁ ଗଲୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।



## ପାନଚୋରୀ କଥା ।

ଗୋଟିଏ ସାଧବଟିଏ ସେ ଚାର ସାତପୁଅ ସାତବୋହୂ । ସବୁ ସାନ ବୋହୂଟିକୁ କେହି ଦେଖି ପାରନ୍ତି ନାହିଁ । ସାତ ଯା ଯାକ ଗର୍ଭହେଲେ, ବଡ଼ ଛ ଯାଆଙ୍କର କାହାର ପୁଅ ହେଲା କାହାରଝିଅ ହେଲା, ସାନ ଯାର କିଛି ହୋଇ ନ ଥାଏ । ଏ ଘରର କାମଦାମ ସବୁ କରୁଥାଏ । ଯେଉଁଦିନ କଷ୍ଟ ପାଇଲା, ଶାଶୁକୁ କହିଲା, ସାନ୍ତାଣି ମୋହ ଦେହ କଣ ହେଉଚି । ଶାଶୁ କହିଲା ଯା ଆଗେ ପାଣି ହେଇଆ ଆଣି ସାର ପଛେ କଷ୍ଟ ପାଇବୁ, ଏ ଅଛି କଣ କରିବ ? ସବୁକାମକରି ସାରିଲା, ଫେର୍ ଶାଶୁକୁ କହିଲା । ଶାଶୁ କଣ କଲା ନା ଅରଠେଖଣ୍ଡିଏ ହାତରେ ଦେଲା । ଗୋଟାଏ ବରଣୀ (୧) ଦେଲା, କହିଲା ଯାଆ ତୁ ସୃତା

(୧) ପରିଷ୍କାର ଉଳର ଘଷି ଯହିଁରୁ ସୂତା କଟାଯାଏ ।

କାନ୍ଦିବାକି ଯାଏ ଯେଉଁଠିସବୁବେଳେଥିଲା ଜଳୁକରିବ, ପୁଅଟି ଏବେହେଲେ ମାଣିକ୍ୟ ନ୍ତି ଅନେକଲେ ଲୋମାମାନଙ୍କେଲ ମାଗିବ ଏ।ଲୋକମାନେମୁଖାବାକି, ଗଲା ବାନ୍ଧଯାଜ, ଯାଇଁ ବେଗାଟାଏ ପାଜବରଜ ଧାରେ କରୁଣାଟି ମରିଲା ସେଇଠି ଜଳୁକଲା, ଝିଅଟିଏ ହେଲା । ଶାବୁକ କାନ୍ଦୁଚ ଝିଅ ହେଲେ ଫୋପାଡ଼ି ଦେଲ ଅସିବ, ଅଉ କେନଇକର ଯିବ କେମନ୍ତ ? ଝିଅକିଟ୍ କଣକଲା ନା ପାଜବରଜ ଉଛରେ ପାନ ଗୁଣ୍ଡାଏ ମାରି ଦେଲା ତା ଉପରେ ଶୁଆଇ ଦେଲା, ତା ପାଖରେ ଦହି ଖଣ୍ଡାଏ କାନ୍ଦିଲା, ଘରକୁ ଅସିଲା । ଅରଦେଶ ରଜା ପାରଧୀ ଅସିଥିଲେ । ଏ ଝିଅଟି ପାଜବ-ରଜରେ କାନ୍ଦୁଚ ଶୁଣିଲେ, କହିଲେ କେହିଜ କୁଅଡ଼େ ନାହିଁ, ପିଲା-ଟିଏ କୋଉଠି କାନ୍ଦୁଚ ଦେଖିବ, ଖୋଜିଲ । ଚାକରମାନେ ଗଲେ ଖୋଜିଲେ, ପାଜବରଜ ପିଠାଇ ଦେଖିଲା ବେଳକୁ ଝିଅଟିଏ କାନ୍ଦୁଚି ତାକୁ ନେଇକରି ଗଲେ ରଜାଙ୍କ ପାଖକୁ । ରଜା କହିଲେ ତାକୁ ନିଅ ଆମଘରକୁ, ଆମେ ତାକୁ ଝିଅ କରିବା । ନେଇକରି ଗଲେ ଘରକୁ, ରାଣୀଙ୍କି ଦେଲେ, କହିଲେ ଏଇଟିକି ପାଳ, ଆମର ଝିଅ କରିବା । ରାଣୀ ପାଳିଲେ, ଝିଅଠାରୁ ଅନ୍ତଃସ୍ନେହରେ ବଢ଼ାଇଲେ । ତା ନାଆଁ ଟି ଦେଇଥାନ୍ତି ପାନଘୋଷ । ପାନଘୋଷିକି ଦଶ ବାରବରଷ ହେଲା । ବଡ଼ ହେଲା, ବାହାଘର ଲଗାଇଲେ, ଅରଦେଶ ରଜାପୁଅକୁ ବାହା କରିଦେବେ । ମାନଘୋଷ ଖୁବ ସୁନ୍ଦରୀ, ଅରଦେଶ ରଜାପୁଅ ଅନ୍ଧ ତାକୁ ଦେଖି ବାଣ୍ଡକୁ ବାହାରିଲା ନାହିଁ, ଅନ୍ଧ ହେଲେ ତା ପାଖରେ ଥାଏ । ପ୍ରଜାମାନେ କହିଲେ ରଜାପୁଅ ଘରୁ ବାହାରିଲେ ନାହିଁ, କିନ୍ତୁ ବାହାରିଲେ ନାହିଁ, କିପରି ଚଳିବ ? ଏହିପରି ଯୋଉଠି, ସମସ୍ତେ କହିଲେ, ରଜାପୁଅ କଣକଲା, ଦିନକର ଘରରୁ ଉଠି ଘୋଡ଼ାରେ ଚଢ଼ି କୁଆଡ଼େ ଚାଲି ବାହାରି । ଯାଇଁ ଅରଦେଶ ରଜାଗାଁରେ ପହଞ୍ଚିଲା । ସେ ଦେଶ ରଜାଝିଅକୁ ବର ମିଳୁ ନ ଥାଏ ସେ ଯେ ଧନାଗାର, କଳାଗାର, ନାଲିଗାର, ନେଳୀଗାର,

ହଳଦିଆଗାର କାଠି ତପ୍ରେତ । ଏ ରଜାପୁଅ ଆଉ ଜାଣେ ନା, ତାର ତେଇଁ ଦେଲ ଗଳ୍ପ ବାହାର । ଏ ରଜାଝିଅର ଧାଈ ତାକୁ ଫେରାଇ ଆଣିଲା, କହିଲା ଆମ ଝିଅଙ୍କର ନିୟମ ଅଛି, ଯେ ଗାରଡ଼େଇଁବ, ସେ ତାଙ୍କୁ ବଭା ହେବ, ତେବେ ଫେରଅସ ବଭାହେବ । ଧାଈ ଯାଇ ରଜାଙ୍କୁ କହିଲା ତମଲଖି (୧) ତୋଳାଇଁ ମିଳାଇଣି ବାହାଘର କର । ରଜା ସବୁ ଯୋଗାଡ଼ କଲେ, ବାହାଘର ହେଲା । ସେ ରଜାଝିଅର ନାମ ଭାଗବତୀ । ଭାଗବତୀ ଆଉ ଏ ରଜାପୁଅ ବେଭାହୋଇ ସେଇଠି ରହିଲେ । କିଛିଦିନ ଗଲା ବାହାର, ଭାଗବତୀ ଏ ରଜାପୁଅପାଇଁ ପାନ ଭାଙ୍ଗିଦିଏ, ଲୁଗା କୁଟେଇ ଦିଏ, ଭାତ ବାଢ଼ି ଦିଏ, ଚଉପେଢ଼ି ସଜାଡ଼ି ଦିଏ, ଘର ଓଳାଇଦିଏ, ଏ ରଜାପୁଅର ମନକୁ ଆଉ ଆସେ ନାହିଁ । ସବୁବେଳେ ପାନସୋଷ୍ଟକ ବାହୁନି କରି କହେ, କି ପାନ ଭାଙ୍ଗିଚୁ ଲୋ ତାଇ, ନୁହେ ମୋ ପାନସୋଷ୍ଟ ପରି, କି ଠାଆ (୨) ଭାଙ୍ଗିଚୁ ଲୋ ତାଇ, ନୁହେ ମୋ ପାନସୋଷ୍ଟ ପରି, କି ଭାତ ବାଢ଼ିଚୁ ଲୋ ତାଇ, ନୁହେ ମୋ ପାନସୋଷ୍ଟ ପରି, କି ଲୁଗା କୁଟିଚୁ ଲୋ ତାଇ, ନୁହେ ମୋ ପାନସୋଷ୍ଟ ପରି, ଏହିପରି ସବୁଦିନେ ବାହୁନେ । ଭାଗବତୀ ଆଉ ଏ ରଜାପୁଅ ମନକୁ ଆସେ ନାହିଁ । ଭାଗବତୀ କହିଲା ଯାଙ୍କର ଗୋଟାଏ ପାନସୋଷ୍ଟ । ଏ କେଡ଼େ ସୁନ୍ଦର ସେ ଏମନ୍ତ, ମନେ ସବୁବେଳେ ଝୁରିଲେ । ମନକଥା ମନରେ ଥାଏ, ଦିନେ ରଜାପୁଅକୁ ପଚାରିଲା, ହେ ତମଗାଁରେ କଣ ମିଳେ ନାହିଁ । ଏ କହିଲା ଆମର ରଜାରାଇଜ, ଅପୂରୁବ କଣ ? ସବୁ ମିଳେ ଯେ ଏକା ପଦ୍ମ ନାଳପତ୍ର ଝିଲ୍ଲୀଶଙ୍ଖା ମିଳେ ନାହିଁ । ଭାଗବତୀ କଣ କଲା, ଗୃହ ପାଞ୍ଚ ଠେଙ୍କାର

---

୧ । ତମ ସମାନ

୨ । ଠାଆ — ଭୂମି ଉପରେ ମଲ୍ଲିକ ଦ୍ୱାରା ଚିତ୍ରିତ ପଦ୍ମଫୁଲ ଇତ୍ୟାଦି ଅଙ୍କିତର ଚିହ୍ନ ଏହା ଉପରେ ଭୋଜନଥାଳୀ ରଖାଯାଏ ।

ପଚ୍ଛ ତାଳପତ୍ର ଝିଙ୍କିଶଙ୍ଖା କିଣି ଆଣିଲା, ଜ୍ଞାନଦେୟୀ ମାଲୁଣୀଙ୍କ ଡାକ ଆଣିଲା, ମନପବନ ଡଙ୍ଗା ଖଟଣ୍ଡ୍ରେ ଆଣିଲା, ମାଲୁଣୀଙ୍କ କହିଲା ତୁ ଅବ ଦେଶ ରଜାଗାଁକୁ ଏ ସବୁ ନେଇକରି ଯିବୁ, ତାଙ୍କଙ୍କର ବିକ୍ରୀ କରିବୁ । ସମସ୍ତେ ଆସିବେ କେବ କୁ, ତୁ କହିବ ଆମେ ବାଣୀ ଆସି ନେଲେ ମୁଁ ଘରେ ସମସ୍ତଙ୍କୁ ଦେବି । ମୋ ଜୀଉ ବାଣୀ ଆସି ଡଙ୍ଗା ଉପରେ ବସି କିଣିବାକୁ ଧରିବ, ତୁ ରାଣୀଙ୍କ ନେଇ ଚାଲି ଆସିବୁ । ଜ୍ଞାନଦେୟୀ ମାଲୁଣୀ ଯାଇ ସେହିପରି କହିଲା, ସମସ୍ତେ ଆସି ପାନପୋଖରୀଙ୍କ ଡାକିଲେ, ଆସ ଲୋକେ ଅଣ ନେଲେ ସମସ୍ତେ ଘରେ ନେବେ । ପାନପୋଖରୀ ଗଲା ଶାଶୁ ପାଖକୁ କହିଲା ମୁଁ କିଣିବାକୁ ଯାଉଛି । ଶାଶୁ ଶ୍ୱଶୁରଙ୍କୁ ଆଉ ଜମା ଦଶୁନାହିଁ ପୁଅକୁ ଝୁରି । ପାନପୋଖରୀ ଯେତେଠୁ କହିଲା କିଣିବାକୁ ଯିବି, ଶାଶୁ କହିଲା ହଉ ଯା । ପାନପୋଖରୀ ଯାଇ ଡଙ୍ଗା ଉପରେ ବସିଲାକ୍ଷଣି, ମାଲୁଣୀ କହିଲା ଯେବେ ସତ୍ୟଯୁଗର ମନପବନ ଡଙ୍ଗା ହୋଇଥିବୁ, ତେବେ ଏହାକୁ ନେଇ ପବନ ବେଗରେ ଚାଲି ଯିବୁ । ଏହା କହିଲାକ୍ଷଣି ଡଙ୍ଗା ଚାଲିଲା ଯେ ଆସି ତାରାବତୀ ରାଜ୍ୟରେ ପହଞ୍ଚିଲା । ତାରାବତୀ ପାନପୋଖରୀଙ୍କ ନେଇ ଗୋଟାଏ ଘରେ ଲୁଚାଇ କରି ରଖାଇଲା । ଏଣେ ଆରଦିନ ପାନପୋଖରୀ ହାତ ର ଘର ଓଳାଇଲା, ପାଣି ଭରାଇଲା, ଭାତ ବଢ଼ାଇଲା, ଲୁଗା ଲୁଚାଇଲା, ସବୁ କରାଇଲା, ପାନପୋଖରୀଙ୍କ ସେଥିଉ ଘରେ ଛାଡ଼ିଦେଇ ଆସିଲା । ରଜା ପୁଅ ସେହିଦିନ ସବୁ ଦେଖିଲା, ଶୁଣିଲା ନାହିଁ, ଭାତ ଖାଇଲା, ଗଲା ବାହାର, ତାରାବତୀ ଭାବିଲା ହଁ ଏହାକୁ ସବୁବେଳେ ଝୁରିଲେ, ମତେ ଦେଖି ପାରିଲେ ନାହିଁ । ଏହା ମନରେ ପାଞ୍ଚି ପାନପୋଖରୀଙ୍କ ବନସ୍ତକୁ ଡାକିନେଲା; ବାଣ ପକାଇ ଆସିଲା । ସେ ବନସ୍ତରେ କଣ ହେଲା, ପାନପୋଖରୀର ପେଟ ପୋଖରୀ ହେଲା, ପିଠି ପଥର ହେଲା, ମୁଣ୍ଡ ମଣ୍ଡପ ହେଲା, ହାତ ଫୁଲଗଛ ହେଲା, ଗୋଡ଼ କଦଳୀଗଛ ହେଲା, ଆଖିଦୋଟି ଶଙ୍ଖମାଳୀ ହେଲେ, ଏହିପରି ହୋଇଥାଏ । ସାଙ୍ଗଳକା ଦିନ୍ଦାଏ ଏଠେ,

ଫୁଲ ନାଥନ୍ତି ଖେଳନ୍ତି । ଦିନକର ରଜାଙ୍କର ମାଳୀ, ଫୁଲ ଖୋଜି ଖୋଜି ଆଉ କୋଉଠି ଫୁଲ ପାଇଲା ନାହିଁ, ଦେଖିଲା ରାଈଜେମା ପିନ୍ଧା ଏ ଫୁଲ ନେଇ ଖେଳୁଛନ୍ତି । ମାଳୀ କହିଲା ଆରେ ପିଲାଏ ତେବେ କୋଉଠୁ ଏ ଫୁଲ ଆଣିଲ, ମୁଁ ଏତେ ଗଳଳ ଖୋଜୁଚି ପାଉନାହିଁ । ସେମାନେ କହିଲେ ମେଳଇଛି ସେ ବନସ୍ତରେ କେତେ ଫୁଲ ଫୁଟିଛି ପାଉନାହଁ ? ମାଳୀ ଫୁଲ ଆଣିବାକୁ ଗଲା । ଆଗ ଦେଖିଲା ପଥର ଉପରେ ଠିଆ ହେବା ଜାଣି, ପାନପୋଷୀ କହିଲା, 'ଧୀରେ ଯାଅ ଠିଆହୁଅ ହେ ମାଳୀ ମୋ ପିଠିକୁ କାଟିବଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଏଣିକି ତେଣିକି ଅନାଇଲା ଦେଖିଲା କେହି ନାହିଁ । ସେ ଖଣ୍ଡରେ ପଶି ଗୋଡ଼ ଧୋଇଲା ବେଳକୁ ପେଁର ପାନ ଘାଗି କହିଲା, 'ଧୀରେ ଧୀରେ ଗୋଡ଼ ଧୁଅ ହେ ମାଳୀ ମୋ ପେଟକୁ କାଟିଛ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । କଦଳୀଗଛ ପତର ତିରିଲା ବେଳକୁ ସେହିପରି କହିଲା, 'ଅରେ ମାଳୀଭାଇ ଧୀରେ ତିରବୁଟି; ମୋ ଗୋଡ଼କୁ କାଟିବଟି, ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି । ମାଳୀ ସେଠାରୁ ଗଲା, ଫୁଲ ତୋଳିଲା ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ତୋଳିବୁ ଟି ମୋ ହାତକୁ କାଟିବ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମଣ୍ଡପ ଉପରେ ଚଢ଼ିଲା-ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ଚଢ଼ିବୁଟି, ମୋ ମୁଣ୍ଡକୁ କାଟିବଟି ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ସେମନ୍ତ ଶୁଅପ ଖିଙ୍କି ଧରିଲା ବେଳକୁ ଶୁଆପାଗ କହିଲେ 'ଧୀରେ ଧରିବଟି, ଅରେ ମାଳୀଭାଇ ମୋ ଆଖିକୁ କାଟିବ ଟି, ଯେଉଁ ସାଆ-ନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଗଲା ରଜାଙ୍କ ଆଗରେ କହିଲା ମଣିମା, ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଚି । ରଜା କହିଲେ କଣ କହ, ଭୟ କାହିଁକି କରୁଚୁ । ମାଳୀ

ସବୁ କହିଗଲା । ରଜା କହିଲେ ତାଉକୁ ଦେଖିବା । ମାଳୀ ଅଉ ଗଲା, ଦେଖିଁବ କେମିତି ବନମିଶ୍ରେ ଧରିଲ, ରଜା କ୍ଷମା ଦେଲେ ମାଳୀ ସେହିଠାରୁ ପଥରେ ଗୃହରେ ଛିଡ଼ା ହୋଇ, ଥାଳିରେ ନେଇ ଖୋଲିଲା, ଆଉ ସବୁ କଲା । ପାନଯୋଗୀ ଆଗ ଯେତି ସବ କହିଲା । ରଜା ଶୁଣିଲେ ଜାଣି ପାରିଲେ ଭାଗ୍ୟବନ୍ତୀ ପାନଯୋଗୀଙ୍କ ଏଠାରେ ଅଛନ୍ତି । ମାଳୀକି ପଠାଇ ଦେଲେ, କହିଲେ ମୁଁ ଏଠାରେ ଥିବାର ତୁ ଆଉ କାହା ଆଗେ କହିବୁ ନାହିଁ, ଯେବେ କହିବୁ କାହାଆଗେ ତୋ ବଂଶକୁ ଶୂଳସ୍ଥାପଦାରେ ଶୂଳ ଦେବି । ମାଳୀ ଘରକୁ ଗଲା ବାହାରି, କାହା ଆଗେ କିଛି କହିଲା ନାହିଁ । ରଜା ସେହି ପୋଖରୀକୂଳେ ବସିଥାନ୍ତି-ଥାନ୍ତି । କାହିଁ ୨ ରାତି ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଛନ୍ତି, ପାର୍ବତୀ କହିଲେ ରହିଥାଅ ୨ କିଏ ଗୋଟିଏ କାନ୍ଦୁଛି ଏତେବେଳେ, ଈଶ୍ୱର କହିଲେ ଗଲେହେ ଆମର ସେଥିରେ କଣ-ଅଛି ? ପାର୍ବତୀ କହିଲେ ଆଉ ଆମେ ସୃଷ୍ଟି କାହିଁକି କରିଅଛୁ ? ଲୋକଙ୍କ ଭଲମନ୍ଦ କିଏ ବୁଝିବ ? ଈଶ୍ୱର ପାର୍ବତୀ ହଁହୋଇଯାକ ବନସ୍ତ ଭିତରକୁ ଗଲେ ରଜାପାଖକୁ, ପଚାରିଲେ ତୁ କିଏ, ଭୂତ କି ପ୍ରେତ କି ଡାହାଣୀ କି ନରଗୁଣୀ ତୁ କିଏ ? ରଜା କହିଲେ ମୁଁ କେହି ନୁହେଁ ଅରଦେଶ ରଜାପୁଅ, ଏପରି ୨ ପାନଯୋଗୀଙ୍କ ବିଭା ହୋଇଥିଲି ଆଉ ୨ ସବୁ କଥା କହିଗଲେ । ଈଶ୍ୱର ପାର୍ବତୀ କହିଲେ ହଉ ତୁ ଟେଣିକି ମୁହିଁ ବୁଲ, ରଜା ଟେଣିକି ମୁହିଁ ବୁଲନ୍ତାରୁ ଫୁଲପାଣି କରି ତିନି ମୁଠା ଛାଟିଦେଲେ ସେ ପାନଯୋଗୀ ଜୀଇ ଉଠିଲା । ଈଶ୍ୱର ପାର୍ବତୀ ଉଭେଇ ଗଲେ । ଏ ରଜାପୁଅ ପାନ-ଯୋଗୀଙ୍କ ଘେନି ଅଇଲା ବାହାରି ଆପଣା ରାଜ୍ୟକୁ, ଭାଗ୍ୟବନ୍ତୀଙ୍କ ଛାଡ଼ିଦେଇ ଆସିଲା । ପାନଯୋଗୀଙ୍କ ନେଇ ଘରଦ୍ୱାର କଲା, ସୁଖରେ ରହିଲା, ମୁଁ ଶଳାକୁ କଥା କହିଲି ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।






ଗୋଟିଏ ଦେଶରେ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୋଟୁଆଳ-ପୁଅ ଏ ଚାରି ସାଙ୍ଗାତ । ଦିନକରେ ଚାରିହେଁଯାକ ବିଚାର କଲେ ବିଦେଶ କରିଯିବା, ଗୋଟିଏ୨ ଘୋଡ଼ା ଚଢ଼ିଲେ ଗଲେ । ଯାଉ୨ ଗୋଟାଏ ଅସୁରୁଣୀ ଦୁଆରେ ରାତି ହେଲା । ଅସୁରୁଣୀକି କହିଲେ ମାଉସୀ ଟିକିଏ ଘର ଯୋଗା ଦେବୁ ? ଅସୁରୁଣୀ ବୁଢ଼ୀ କହିଲା ହଉ ରହ । ଘର ଯୋଗା ଦେଲା ରୋଷାଇ କରିବାକୁ ଡାଲି ଚାଉଳ, ହାଣ୍ଡି, ସରବା ହେଣ୍ଡିକା ସବୁ ଦେଲା । ଏମାନେ ଗୋଟାଏ ଘରେ ରହି ରୋଷାଇ ବାସ କରୁଛନ୍ତି ବୁଢ଼ୀ ଅସୁରୁଣୀ ଆଉ ଗୋଟାଏ ଘରେ ତାର ରୋଷାଇବାସ କରିବାକୁ ଗଲା । ମନ୍ତ୍ରୀପୁଅ ତାହାର ଦୁଆରକୁ ଯାଇ ଦେଖେ ଯେ ଅସୁରୁଣୀ କଣ କରୁଛି ନା ଗୋଟାଏ ଘୋଡ଼ା ଚୁଲିକି ମୁହାଁଇ ଦେଇଛି, ଆଉ ଗୋଟାକରେ ପାଣି ଆଣୁଛି, ଚାଉଳ ଧୋଉଛି ଏହିପରି ସବୁ ଘରକାମଦାମ କରୁଛି । ଏ ଯାଇ ଆଉ ତିନି ସାଙ୍ଗାତଙ୍କୁ କହିଲା ହେ ସାଙ୍ଗାତ ଏ ଅସୁରୁଣୀ ଘରୁଟାଏ, ଚାଲ ଆମର ଏଠାରୁ ଯିବା ବାହାରି । ଚାରିହେଁଯାକ ଆଉ ଖାଇଲେ ନାହିଁ, ପିଇଲେ ନାହିଁ, ରୋଷାଇ ଛାଡ଼ି ଦେଇ ଘୋଡ଼ା ଉପରେ ବସି ଗଲେ ବାହାରି, ବୁଢ଼ୀ ଅସୁରୁଣୀ ଯାଉଁ ଜାଣିଲା ଏମାନେ ଯାଉଛନ୍ତି ବାହାରି ଲଣ୍ଡଭଣ୍ଡ ହୋଇ ଘରୁ ଘୋରଷ ହ ଯେତେ ଧନ ଆସିଲା, ମନ୍ତ୍ରୀପୁଅ ଘୋଡ଼ା ଲାଙ୍ଗୁଡ଼ରେ ବାନ୍ଧି ଦେଲା, କହିଲା ତୁ ଯେମନ୍ତ ସତ୍ୟମୁଣ୍ଡର ଘୋରଷ ହୋଇଥିବୁ, ବଞ୍ଚି୨ ଯାଉଥିବୁ, ଗଛ ଉଠି୨ ଯାଉଥିବ, ଫୁଲ ଫୁଟି୨ ଯାଉଥିବ । ଏହା କହି ଘରକୁ ଆସିଲା ସେ ଆମାନଙ୍କୁ ଡାକି କହିଲା ତୁଅଢେ ଯାଇଛ ଲୋ, କି ସୁନ୍ଦର ଭେଣ୍ଡା ଆଣି ରଖିଥିଲୁ,

ଖାଉଥାନ୍ତି କୁଆଡ଼େ ଗଲ । ଏମାନେ ତାଙ୍କ ଶୁଣି ଦଉଡ଼ି ଆସିଲେ କହିଲେ ମା କଣ, କାହିଁକି ଡ଼ାକୁଛ ? ଏ କହିଲା ତେମେମାନେ ଯାଅ, ଦଉଡ଼ି ମୁଁ ଘୋଡ଼ା ଲାଙ୍ଗୁଡ଼ରେ ମୋଳଷ ବାନ୍ଧି ଦେଇଛି, ଗଛ ଉଠି ଯାଉଥିବ, ଫୁଲ ଫୁଟି ଯାଉଥିବ, ସେଇ ବାଟେକୁ ଗୁହିଁ ଗୁହିଁକା ଦଉଡ଼ିବ ତେବେ ମୋ ଗୁର ଦେଖାଙ୍କୁ ପାଇବ । ଏ ସାତ-ହିଁ ଅଯାଙ୍କ ଦଉଡ଼ିଲେ, ଯାଇ ଘୋଡ଼ା ପଛରେ ଲାଗିଲେ । ଏମାନେ ଅନାଇ ଦେଖାବେଳକୁ ଅସୁରୁଣୀ ସାତଟା ଆସି ଘୋଡ଼ା ପଛରେ ଲାଗି ଗଲେଣି । ଏ ଗୁର ସଙ୍ଗାତ କହିଲେ ନିଶ୍ଚୟ ନେସମନ୍ତ ସତ୍ୟଯୁଗ ହୋଇଥିବ ଆମ୍ଭ ପଛରେ ଖାଲି କଣ୍ଟାବଣ ହୋଇଯିବ । କଣ୍ଟାବଣ ହୋଇଗଲା ଯୋଉଠୁ, ସବୁ ବଡ଼ ଡହୁଣୀ ରହିଲା ଅଉ ଛ ଜଣ ଫେରି ଆସିଲେ, କଣ୍ଟାରେ ପଶି ପାରିଲେ ନାହିଁ । ଏ କଣ କରୁଥାଏ କଣ୍ଟା ସବୁ ଦାନ୍ତରେ କାଟିପକାଉଥାଏ, ଏମାନଙ୍କ ପଛେ ଦଉଡ଼ୁ-ଥାଏ । ଫେର ଏମାନଙ୍କ ପଛରେ ଲାଗିଗଲା । ଏମାନେ କହିଲେ ଯେବେ ସତ୍ୟଯୁଗ ହୋଇଥିବ ଯେବେ ଅଗ୍ନିମୟ ହୋଇଯିବ । ସବୁ ଅଗ୍ନିମୟ ହୋଇଗଲା । ଅସୁରୁଣୀ ଝୋପ ପକାଇ ପକାଇ ନିଆଁକୁ ଲିଭାଇଦେଲା, ଏମାନଙ୍କ ପଛରେ ମିଶି କହୁଥିଲା ପୁଅକୁ ଅଉ ତା ଘୋଡ଼ାକୁ ଖାଇଦେଲା । ବାକି ତିନି ସଙ୍ଗାତ ପଳାଉଥାନ୍ତି, ଏ ତାଙ୍କ ପଛେ ଦୌଡ଼ି ସାଧବପୁଅକୁ ମନ୍ତ୍ରୀପୁଅକୁ ଖାଇଦେଲା । ରଜାପୁଅ ସମସ୍ତଙ୍କ ଆଗରେ ଥାଏ । ଯେଉଁଠାରେ ଗୋଟାଏ ଆମ୍ବଗଛ ଥିଲା ତହିଁରେ ଚଢ଼ିଗଲା କହିଲା ହେ ବୃକ୍ଷରାଜ, ନିଶ୍ଚୟ ସତ୍ୟଯୁଗର ଯେବେ ହୋଇଥିବୁ ତୁ ଫାଟି ଯିବୁ ମୁଁ ପଶିଯିବି । ରଜାପୁଅ ଆମ୍ବଗଛ ଭିତରେ ରହିଲା, ଅସୁରୁଣୀ ତା ଘୋଡ଼ାଟିକୁ ଖାଇଦେଇ ସେହି ଗଛମୂଳେ ବସି ରହିଲା । ଗୋଟିଏ ଦିବ୍ୟସୁନ୍ଦର ରାଣୀ ବେଶଧରି ବସିଲା, ମିଛେ କାନ୍ଦୁଥାଏ । ରଜା ଆସିଥିଲେ ଶିକାରକୁ, ତାଙ୍କ ନଜରରେ ପଡ଼ିଲା । ରଜା କହିଲେ

ଗୁଣୁଣି ଥିଲୁ, ଗୁଣିବୁଛି କାହା ଲକ୍ଷ୍ୟ କନ୍ୟା । ଗୁଣୁଣି ଖ ଗୁଣିଲା, କହିଲା ଗ୍ରହମାନଙ୍କ ଲକ୍ଷ୍ୟ । ରଜା ସେମାନେ, ଯେ ଅସୁରୁଣୀକୁ ମାଗାରେ ନେଇ ଘରକୁ ଗଲେ, ବିଭାହେଲେ ରହିଲେ । ଅସୁରୁଣୀ ରଜାଙ୍କୁ କହିଲା ମୁଁ ଯେଉଁ ଆମ୍ବଗଛତଳେ ବସିଥିଲି, ତାକୁ ଆଣି ମୋ ଆଗରେ ଗଦାକର । ରଜା ଧୋବାକୁ ହୁକୁମ ଦେଲେ ଗଛକୁ କାଟିଆଣି ରାଣୀଙ୍କ ଆଗେ ଗଦାକରିବାକୁ । ଧୋବା ଗଲେ ଗଛକୁ ହାଣିଲେ । ସେ ରଜାପୁଅର ନା କଳାରଜନ । ସେ ଗଛରେ ଥାଇ କହିଲା, ଭୁ ଯେମନ୍ତ ସତ୍ୟଯୁଗର ଆମ୍ବଗଛ ହୋଇଥିବୁ ଏହିକ୍ଷଣି କେଣ୍ଡିଏ ବଉଳିବୁ, ଚଣା ଫୁଟିବ, ଆମ୍ବ ହେବ, ପାଚିବ ମୁଁ ତହିଁରେ ପଶିବି; ସେ ଆମ୍ବଟି ଏହି ବେଣ୍ଟପୋଖରୀରେ ଝୁଣ୍ଡିପଡ଼ିବ । ସେଇକ୍ଷଣ ସେହିପରି ହେଲା, କଳାରଜନ ଆମ୍ବ ଭିତରେ ପଶି ବେଣ୍ଟପୋଖରୀରେ ଝୁଣ୍ଡି ପଡ଼ିଲା । ଧୋବାମାନେ ସେ ଗଛକୁ ହାଣିହୁଣି ରାଣୀଙ୍କ ଆଗେ ଜମା କରିଦେଇଗଲେ । ଅସୁରୁଣୀ ଖଣ୍ଡିକୁ ଖଣ୍ଡି କାଠ ଚଡ଼ମଡ଼ କରି ଚୋବାଉଥାଏ, କହୁଥାଏ କାଠେଇଖିଆ ଏଥିରେ ତ ନାହିଁ ଏହିପରି କରି ଗଛର କାଠ ଚୋବାଇଲା । ଯେଉଁ ଧୋବା କାଠକାଟି-ବାକୁ ଆସିଥିଲେ ସେ କହିଲେ ମଣିମା, ଗୋଟିଏ କଥା କହିବାକୁ ଭୟ ଲାଗୁଛି, ଆମେ ଯେତେବେଳେ ସେ ଗଛକୁ ପକାଉଥିଲୁଁ ସେ ଗଛ ସେହିକ୍ଷଣି ବଉଳିଲା, ଚଣା ହେଲା, ଗୋଟିଏ ଆମ୍ବ ହେଲା ପାଚିଲା, ସେ ପୋଖରୀରେ ଝୁଣ୍ଡି ପଡ଼ିଲା । ଅସୁରୁଣୀ କହିଲା ସେଇ-ଥିରେ ତ କାଠେଇଖିଆ ଗଲା କାହାନ୍ତି ଏଥିକି କୋଉଠୁ ଆସିବ ? ଗଲା ରଜାଙ୍କୁ କହିଲା, ମହାରାଜ ଯେ ଯେଉଁ ବେଣ୍ଟପୋଖରୀ ଅଛି ତହିଁରେ ଯେତେକ ମାଛ କଇଁଛ ଗେଣ୍ଡା ଅଛନ୍ତି ମୋପାଖକୁ ସବୁ ଆଣିବ, ପଙ୍କ ଛଡ଼ା । କେଉଟ ଗଲେ ପୋଖରୀଠାରୁ ପାଣି ବୁହାଇଲେ, ଯେତେକ ମାଛ କଇଁଛ ଥିଲେ ସବୁ ଆଣି ଅସୁରୁଣୀକି ଦେଲେ, ଆଉ ବଡ଼ ମାଛ ଦୋଟି, ତାଙ୍କ ନା ରାଘବ ବୋଇଲକ, ସେ ଦୋଟିକି ବଡ଼ରାଣୀଙ୍କ

ପାଖରେ ଦେଲେ । ବଡ଼ରାଣୀ ଗୁଡବ ମାଛକୁ କାଟିଲା ବେଳକୁ କଳାଗଜନ ତାଙ୍କ ପାଖରେ ଥାଇ କୋଳା,' ମା ଧୀରେ କାଟିବ ହି, ମୁଁ ବାଣ ହୋଇପଡ଼ିବ । ବଡ଼ରାଣୀ ମାଛକାଟୁଥିଲେ ମହାବାଣ୍ଡ ଧୀରେ ଧୀରେ ବେକଠାରୁ କାଟିଲାବେଳକୁ କଳାଗଜନ ବାହାରି ପଡ଼ିଲା କହିଲା ତେମେ ମୋର ଧର୍ମର ମା, ମୁଁ ତମର ଧର୍ମର ପୁଅ, ଅମ୍ବୁରୁଣୀର ସବୁକଥା କହିଗଲା । ବଡ଼ରାଣୀ ଶୁଣିଲେ, ପୁଅଟିକୁ ରଖିଲେ, ରହିଲେ, ଏଣେ ଅମ୍ବୁରୁଣୀ ସବୁ ଗୋଷ୍ଠୀରୁ କାଇଁକି ପର୍ଯ୍ୟନ୍ତ ସୁଝୁଥାଏ, ଖାଇ ଦେଉଥାଏ, କହୁଥାଏ ଏଥିରେତ ସେ କାଠେଇଖିଆ ନାହିଁ କୁଅଡ଼େ ଗଲା ? ଏହିପରି କରି ପୋଖରୀର ମାଛ କଙ୍କଡ଼ା ସବୁ ଖାଇଲା । କେତେବେଳପରେ ଶୁଣିଲା ବଡ଼ରାଣୀଙ୍କ ଝିଅପକୁ ଯୋଡ଼ାଏ ବଡ଼ମାଛ ଯାଇଚି, ସେଥିରୁ ଗୋଟାଏ ପୁଅ ବାହାରିଚି କହିଲା ସେଥିରେତ କାଠେଇଖିଆ ଗୁଳିଗଲା । ଏହା କହିଲା ଭୁକ ହୋଇରହିଲା । କେତେଦିନ ଗଲା ଅମ୍ବୁରୁଣୀର ଗର୍ଭହେଲା, ତାର ପୁଅଟିଏ ହେଲା । ପୁଅଟିକ ଦଶ ବାର ବରଷ ହୋଇଗଲା ଯାଉଁ ଘୋଡ଼ା ଚଢ଼ି ଶିଖିଲା, କାଣ୍ଡମାରି ଶିଖିଲା । ବଡ଼ ରାଣୀ ପୁଅ କଳାଗଜନ ସାଙ୍ଗେ ଘୋଡ଼ା ଦଉଡ଼ କରେ, କାଣ୍ଡ ମାରେ । କଳାଗଜନ ଯେମନ୍ତ ଘୋଡ଼ା ଦୌଡ଼ କରିପାରେ, ଯେମନ୍ତ କାଣ୍ଡ ମାରିପାରେ, ଅମ୍ବୁରୁଣୀପୁଅକୁ ସେମନ୍ତ ଆସେ ନାହିଁ । ଅମ୍ବୁରୁଣୀପୁଅର ସୁନାନଳ, ସୁନାକାଣ୍ଡ, କଳାଗଜନର ବାଉଁଶନଳ ବାଉଁଶକାଣ୍ଡ । କଳାଗଜନ ବାଉଁଶକାଣ୍ଡକୁ ଯୋଉଟିକି ଲାଖି କରେ, ସେଇଠି ପଡ଼େ, ଅମ୍ବୁରୁଣୀପୁଅର ସୁନାକାଣ୍ଡ ଏଣେତେଣେ ହୋଇ ଗୁଳିଯାଏ । ଦିନେ ଅମ୍ବୁରୁଣୀ ପୁଅ କଳାଗଜନକୁ କହିଲା, ଭାଇ ତେମେ ଏ କାଣ୍ଡକୁ ମାର, ମୁଁ ତମ କାଣ୍ଡ ମାରେ । କଳାଗଜନ ସୁନାକାଣ୍ଡକୁ ମାରିଦେଲା ସେ ଯାଇଁ ଅମ୍ବୁରୁଣୀ ବଇଜରେ ପଡ଼ିଲା, ବୁଢ଼ୀ ଅମ୍ବୁରୁଣୀର ପାନଟିଏ ଗୋଟାଇକରି ରଖିଥାଏ । ଅମ୍ବୁରୁଣୀପୁଅ ଯାଇ ମା ଆଗରେ କହିଲା, ଭାଇ ମୋ

କାଣ୍ଡ କୁଆଡ଼େ ମାରଦେଲା ଅଉ ମାଗି ମାଗି ମତେ ଦେଉନାହିଁ । ଅସୁରୁଣୀ କଳାଗଜନକୁ ଡକାଇ କହିଲା ମୋ ପୁଅର କାଣ୍ଡ ଆଣିଦେ, ନହଲେ ତୋର ମୁଣ୍ଡକାଟ ହେବ । ଏ ଯାଇଁ ବଡ଼ରାଣୀ ଆଗରେ କହିଲା, ମା ମତେ ଛ ମାସ ଛୁଟି ଦିଅ, ମୁଁ ତାଙ୍କ କାଣ୍ଡ ଆଣିଦେବି । ଏ କାନ୍ଦୁଣୀମାନଙ୍କଠି ହୋଇ ବିଦାୟ ଦେଲା । କଳାଗଜନ ଘୋଡ଼ାରେ ଚଢ଼ି ବାହାରିଲା, ଯାଇ ପାସିରଜା ଦେଶରେ ପହୁଞ୍ଚିଲା । ପାସିରଜା ଝିଅକୁ ବର ମିଳୁ ନ ଥାଏ ଯେ ସେ ଚୂଆ ଗାରେ ଚନ୍ଦନ ଗାରେ ଗନ୍ଧକ ଗାରେ ତିନ ଗାର କାଟିଦେଇ ବସିଚି, କଳାଗଜନ ସେ ଗାର ଡେଇଁ ଦେଇ ଘୋଡ଼ା ନେଇଗଲା । ପାସିରଜାଝିଅ ଧାଇଁ ଦଉଡ଼ି ଯାଇ କଳାଗଜନକୁ ଡାକିଲା କହିଲା କୁଆଡ଼େ ଯାଉଚ ଫେରି ଆସ; ଅମ ଦେଇଙ୍କର ସତ୍ୟ ହୋଇଚି ଏ ଗାର ଯେ ଡେଇଁବ ସେ ତାଙ୍କୁ ବିଭା ହେବ । କଳାଗଜନ କହିଲା ହଉ ତେବେ ରହୁଚି । ରଜାଙ୍କ ପାଖକୁ ଖବର ଗଲା; ବିଭାଘରର ଯୋଗାଡ଼ ହେଲା, ବିଭାଘର ହେଲା । ଚଉଠି ଦିନ ରାତିରେ କଳାଗଜନ ପାସିରଜା ଝିଅକୁ କହିଲା ହେ ତମ ରାଜ୍ୟରେ ପଟେ ସୁନାକାଣ୍ଡ ପଡ଼ିଚି କି ? ଏ କହିଲା ନାହିଁ ଅମ ଦେଶରେ ପଡ଼ିନାହିଁ, ଅପାଘରଇଜରେ ପଡ଼ିଥିବ । ଏ କହିଲା ଅପାଘରଇଜ କୋଉଠି, ଏଠିକି କେତେ ବାଟ ? ପାସିରଜାଝିଅ କହିଲା ବାଘରଜା ଦେଶରେ, ଏଠିକି ପାଏ ବାଟ ହେବ । ତହିଁ ଆରଦିନ କଳାଗଜନ ବାଘରଜାଦେଶକୁ ବାହାରିଲା, ଯାଉଚି ବାଘରଜାଝିଅକୁ ବର ମିଳୁ ନ ଥାଏ ଯେ ସେ ସେହିପରି ତିନଗାର କାଟିଦେଇ ବସିଚି, ସେ ଗାର ଡେଇଁ ଚାଲିଗଲା । ଧାଇଁ ସେହିପରି ଡାକିଆଣିଲା, ରଜା ଜାଣିଲେ ବିଭାଘର ହେଲା । ଚଉଠି ଦିନ କଳାଗଜନ ବାଘରଜା ଝିଅକୁ ସେହିପରି କାଣ୍ଡ କଥା ପଚାରିଲା । ଏ କହିଲା ଅମ ରାଇଜରେ ପଡ଼ିନାହିଁ ଅପାଘରଇଜରେ ପଡ଼ିଥିବ । କଳାଗଜନ ପଚାରିଲା, ଅପାଘର କୋଉଠି, ଏଠିକି କେତେ ବାଟ ହେବ ? ନାଗରଜାଝିଅ

ଫିମ୍ପିଙ୍ଗ ଅର୍ଥାତ ବାଘ୍ରାରଜା ଦେଶରେ, ଏଠିକି ପାଏ ବାଟ ହେବ । ତହିଁ ଆରଦିନ କଳାଗଞ୍ଜନ ଘୋଡ଼ାରେ ଚଢି ବାଘ୍ରାରଜାଦେଶକୁ ଗଲା । ସେଠାରେ ସେହିପରି ବାଘ୍ରାରଜାଙ୍କ ଝିଅକୁ ବର ମିଳୁ ନ ଥାଏ ବୋଲି ସେ ସେହିପରି କଳା, ଧଳା, ହଳଦିଆ ଛନଗାର କାଟି ବସିଛି; କଳାଗଞ୍ଜନ ଗାର ଡିଅଁ ଗୃହକୁ ଗଲା । ତାକୁ ସେଠାରେ ସେହିପରି ଅଟକାଇଲେ, ବାଘ୍ରାରଜାଝିଅ ତାଙ୍କୁ ବଭା କରି ଦେଲେ । ଚତୁର୍ଥୀ ଦିନ ଏ ସେହିପରି କହିଲା, ଘୁନାକାଣ୍ଡ ଏଠି ପଡ଼ିନାହିଁ, ଅପାରଇଜ ଯମରଜାଦେଶରେ ପଡ଼ିଥିବ । କଳାଗଞ୍ଜନ ତହିଁ ଆର-ଦିନ ଯମରଜା ଦେଶକୁ ଗଲା, ଯମରଜା ଝିଅକୁ ସେହିପରି ବିଭା ହେଲା; ଯମରଜାଝିଅ କାକତରିକ ପଢ଼ା, ତାକୁ ତିନିପୁରର କଥା ଜଣା । ଏ ସୋଇଠୁ ପଚାରିଲା ଘୁନାକାଣ୍ଡ ପଡ଼ି ଏ ଦେଶରେ ପଡ଼ିଚି କି ? ସେ କହିଲା ଆମ ରାଇଜରେ ପଡ଼ିନାହିଁ, ବୁଢ଼ୀଅସୁରୁଣୀ ରାଇଜରେ ପଡ଼ିଚି, ତା ପାନଝିଅ ପାଇବାର ରଖିଚି । ତେବେ ସେମନ୍ତ ଆଣିବାକୁ ଯିବ, ଏଇଯା କରିବ, ଅସୁରୁଣୀ ଛ ଝିଅ ଆଉ ବୁଢ଼ୀ-ଅସୁରୁଣୀ ଖରା ପୁଆଉଁଥିବେ, ତେବେ ଯିବ ମେଘନାଦ ପାଚେରୀକି ଡେଇଁ ପଡ଼ିବ, ସବୁ ଯାକଙ୍କୁ ଥିଲେ ବଧାଏ ପକାଇବ; କହିବ ତୋର କଣ ମନେ ନାହିଁକି, ତୁ ହୋଇଥିଲୁ ଛ ମାସର ମୁଁ ହୋଇଥିଲି ବରଷକର, ତୋର ମୋର ବଭାଘର ହୋଇଥିଲା, ତୁ ଏବେ ମତେ ଚିହ୍ନିପାରୁନାହୁଁ ? ଏହା କହିବ, ତାକୁ କାନ ଧରି ଘରକୁ ନିଙ୍କି ନେଇଯିବ । ଏପରି କଲାପରେ ଆଉ ସମସ୍ତେ ବାହାରିଯିବେ ଦେଢ଼ଶାଶୂ ଶାଶୁ ମାନନା କରି, ତମକୁ ସେ ଘରକୁ ଡାକି ନେଇଯିବ, କଥାବାର୍ତ୍ତା ହେବ, ତେବେ ତାଙ୍କୁ କଥାରେ ସବୁ ପଚାରି ନେବ । କଳାଗଞ୍ଜନ ସବୁ ଶୁଣିଲା, ତହିଁ ଆରଦିନ ଘୋଡ଼ାରେ ବସି ଅସୁରୁଣୀ ରାଇଜକୁ ଗଲା, ଯମରଜାଝିଅ ଯେମନ୍ତ କହିଥିଲା ସବୁ ସେମନ୍ତ କଲା । ବୁଢ଼ୀ-ଅସୁରୁଣୀ ଆଉ ତାର ବୋହୂଝିଅମାନେ ଲୁଅଡ଼େ ଗୃହକୁ ଗଲେ ଜୋର୍

* ଉତ୍କଳକାହାଣୀ ।

ମାନନ୍ତି, ଲେଖା କରି, ଏ ଦୁହେଁ ନାକ ରହିଲେ, କଥାବାର୍ତ୍ତା ହେଲେ । କଳାରଜନ କହିଲା ତମ ଦେଶରେ ପଟେ ସୁନାକାଣ୍ଡ ଅଛି କି ? ଏ କହିଲା ହଁ ପଡ଼ିଥିଲା । ମୁଁ ପାଳି ରଖିଛି, ଏହା କହିଲା, ଯେଉଁ ଘରେ ତାକୁ ରଖିଥିଲା ସେ ଘର ପିଠାଇ ଆଣିବାକୁ ଗଲା । କଳାରଜନ ବି ସାଙ୍ଗେ ଯାଇଥାଏ, ଦେଖିଲା ସେ ଘରେ ଗୋଟାଏ ଖଡ଼ି ଉପରେ ଅନେକ ଲଉ ଥୁଆ ହୋଇଛି । ଏ ପଚାରିଲା ଏ ଲଉ-ଗୁଡ଼ାକ କାହିଁକି ଅଛି ? ଅସୁରୁଣୀଟିଏ କହିଲା, ଏଥିରେ ସବୁ ଆମ୍ଭ-ମାନଙ୍କର ଜୀବନ ଅଛି; ଏ ବଡ଼ଟିରେ ମୋ ମାର, ଯାହାଠାରୁ ଯୋଉଟି ସାନ ସେଇଟି ମୋ ବଡ଼ ଭଉଣୀର, ସେ କେତେଦିନ ହେଲା ଲୁଅଟେ ଯାଇଛି ଆସିବାକୁ ନାହିଁ, ସବା ସାନଟି ମୋର, ଆଉଗୁଡ଼ାକ ମୋ ଭଉଣୀଙ୍କର, ଏହିପରି ସବୁ ଦେଖାଇ ଦେଲା । କଳାରଜନ କଣ କଲା ଅଗଣାଟା ସେ ସାନ ଲଉଟି ଘେନି ଆସି ପିଟି ଦେଲା ଯେ ସାନ ଅସୁରୁଣୀଟି ମରିଗଲା । ସାନ ଅସୁରୁଣୀଟି ମରିଗଲା ଯୋଉଠୁ, ଆଉ ଛଅଟି ଲଉ ବାଡ଼େଇଦେଲା, ବଡ଼ ଭଉଣୀର ଲଉଟି ଆଣିଲା, ସୁନାକଳ ସୁନାକାଣ୍ଡ ଘେନିଲା, ଆସି ଯମରଜା ଦେଶରେ ପହଞ୍ଚିଲା, କହିଲା ଆମକୁ ବିଦା କରିଦିଅ । ଯମରଜାଝିଅ ଶିଖାଇଥାଏ ତେମେ ବାପାଙ୍କୁ କିଛି ମାଗିବ ନାହିଁ; ଗଲାବେଳକୁ କହିବ ମତେ ସେ ଶ୍ରେଷ୍ଠୀ ଯମଟିକି ଦିଅ । ଯମରଜା ଝିଅ ଜୋଇଁକୁ ବିଦା କଲେ, ଯିବା ବେଳକୁ କଳାରଜନ କହିଲା ମତେ ଆପଣଙ୍କ ଶ୍ରେଷ୍ଠୀ ଯମଟିକି ଦିଅନ୍ତୁ, ଯମରଜା କହିଲେ ଝିଅ ନ କହିଥିଲେ କି ଜୋଇଁ ମାଗନ୍ତା ? ହଉ ଦିଅ, ଏହା କହିଲେ ଶ୍ରେଷ୍ଠୀ ଯମଟିକି ଦେଇ ବିଦା କରି ଦେଲେ । ସେଠାରୁ ଆସି ଯମରଜାଝିଅକୁ ବାଟରେ ରଖାଇ, କଳାରଜନ ବାଘରଜା ଘରକୁ ଗଲା, କହିଲା ମତେ ବିଦା କରିଦିଅ ମୁଁ ଯିବି, ବାଟରେ ମନିଷ ବସିଛନ୍ତି । ବାଘ-ରଜାଝିଅ ସେହିପରି କହିଥାଏ ତେମେ ଗଲାବେଳକୁ ବାପାଙ୍କୁ ଶ୍ରେଷ୍ଠୀ

କାର୍ଦ୍ଧାଙ୍କୁ ମାଗିବ । ବାର୍ଦ୍ଧାରଜା ସବୁ ଦେଲା, ବିଦାକଲାବେଳକୁ କଳାଗଜନ କହିଲା ଆପଣଙ୍କ ଶ୍ରେଷ୍ଠୀ ବାର୍ଦ୍ଧାଙ୍କୁ ସଙ୍ଗେ ଦିଅନ୍ତୁ । ଶ୍ରେଷ୍ଠୀ ବାର୍ଦ୍ଧାଙ୍କୁ ଦେଲେ, ବିଦା କରିଦେଲେ । ଆସିଲେ ଧର୍ମଶ୍ରେ ବାଟରେ ଠାଏ ରହିଲେ, ଏ ବାଘରଜା ଘରକୁ ଆସିଲା । ସେଠାରୁ ବିଦା ହୋଇ ଆସିଲା, ଆସିଲାବେଳକୁ ଶ୍ରେଷ୍ଠୀ ବାଘଙ୍କୁ ଯୌତୁକରେ ଆଣିଲା । ସେଠାରୁ ପାଗରଜ ଘରେ ପହଞ୍ଚିଲା, ପାଗରଜା ବି ସେହି ପରି ବିଦା କଲା । ପାଗରଜାଠାରୁ ବି ସେହିପରି ଶ୍ରେଷ୍ଠୀ ପାଗଟିଏ ଯୌତୁକ ଆଣିଲା । ଧର୍ମଶ୍ରେ ଏକାଠି ଚାଲି ହେଲେ, ଆସିଲେ । ଆସିକରି ଘରପାଖରେ ପହଞ୍ଚିଲେ ଯେଉଁଠୁ ବଡ଼ରାଣୀଙ୍କି ଧର୍ମଶ୍ରେ କହିଲେ, ତମ ପୁଅ ମୃତ କନ୍ୟା ଜନ୍ମ ହୋଇ ଅମୁଛି । ଏ କହିଲା ମୁଁ କୋଉଠୁ ଆଉ ପୁଅ ପାଇବି, ପୁଅ ତ ବରଷେ ହେଲା କୁଅରେ ଗଲାଣି, ମୁଁ କୋଉଠି ପୁଅବୋହୂ ଦେଖିବି । ଏହା କହୁ କହୁ ପୁଅ-ବୋହୂ ଆସି ଦାଣ୍ଡଦୁଆରେ ପହଞ୍ଚିଲେ । ସେତେବେଳେ କହିଲେ ଆଉ ସତ କରୁ ନ ଥାଏ, ଦାଣ୍ଡକୁ ଯାଉ ନ ଥାଏ । ବୋହୂମାନଙ୍କ ପୁଅର ଯାଇଁ ଦାଣ୍ଡଦୁଆରେ ଥୁଆହେଲା, ବଡ଼ରାଣୀ ଗଲା ଭିତରୁ ଆଣିକରି ପୁଅ ବୋହୂଙ୍କୁ ଘରକୁ ନେଇ ଆସି ବନ୍ଦାପନା କଲା । ବୋହୂମାନେ ଘରେ ରହିଲେ, କଳାଗଜନ ଗଲା କାଣ୍ଡ ଦେବାକୁ, ଅପୁରୁଣୀକି ଦଣ୍ଡବତ କଲା । ଅପୁରୁଣୀ କହିଲା, 'ସତେଇ ଫୁଟି ସବାଳେ ଯା ଜନ୍ମିଥିଲୁ ଯଶ ଆଇଷ ପା' କହିପରି କଲ୍ୟାଣ କଲା । ଦିନେ ଦି ଦିନ ଗଲା, ଅପୁ-ରୁଣୀର ମନ କେମନ୍ତ କଳାଗଜାକୁ ମାରିବ; କହିଲା ବେଣ୍ଟପୋଖରୀ ଉପରେ ଜମି ମାଣେ ହଳଦେବ ଛଅଁରେ ସୋରିଷ ତୋଳିଏ ବୁଣା ହେବ, ତାକୁ ଯେତେବେଳ ଗଛ ୨ ହୋଟେଇ କାଲି ସକାଳୁ ଥୋଇ-ଥିବୁତ ତୋର ମୁଣ୍ଡ ରହିବ, ନଇଲେ ତୋ ମୁଣ୍ଡ କଟାହେବ । କଳାଗ-ଜନ ଆସିଲା ଘରକୁ, ମୁହଁ ଶୁଖେଇଦେଇ ବସିଥାଏ । ହେଲାଦିନ ପାଗ-ରଜାର୍ଝିଅର ପାଳି ହୋଇଥାଏ । ପାଗରଜା ଝିଅ ଗନ୍ଧ ପାଇଲା, ଜାଣି

କାଢ଼ିଲା, କଳାରାଜନକୁ ଡାକିବାକୁ ଗଲା, ଦେଖେ ଯେ କଳାରାଜନ ମୁହଁ ଶୁଖେଇ ଦେଇ ବସିଛି । ପାରରାଜାଝିଅ କହିଲା, ତମେ ସବୁଦି ପାଳିଦିନ ହସ ହସ ହୁଅ, ମୋ ପାଖରେ କାହିଁକି ମୁହଁ ଶୁଖେଇ-ଦେଇ ବସିଥାଅ ? ଏ କହିଲା ହସିବି କଣ, ଜଣକ ଲାଗିକି ଘର ଜଣ ବଧବା ହେବେ । ପାରରାଜାଝିଅ କହିଲା ଏହା କାହିଁକି କହିଲ ? କଳାରାଜନ କହିଲା ଦେଖ ଆମ ଆଇ ମାଙ୍କର ହୁକୁମ ହୋଇଛି ବେଣ୍ଟପୋଖରୀ ଉପରେ ଷୋଳଶ ଢୋଲିଏ ବାନ୍ଧିଦେଇ ଆସିବେ, ଆଜ ରାତିକୁ କୋଉଠି ମୁଁ ଗଡ ଗଡ ଢୋଲକର କାଲି ସକାଳକୁ ଥୋଇଥିବି, ନଇଲେ ମୋ ମୁଣ୍ଡକାଟ ହେବ । ପାରରାଜାଝିଅ କହିଲା ହେ ହେ ! ଏଇ ଛାରକଥା ପାଇଁ ସେମିତି କାହିଁକି ହେଉଛ ? ସେ କଥା ବୁଝାଯାଏ ହିନା, ତମେ ଆସ ଖାଇବାକୁ ଯିବ । କଳାରାଜନ ଖାଇବାକୁ ଗଲା, ସମସ୍ତେ ଖାଇ ପିଇ ସାରିଲେ, ପାରରାଜାଝିଅ ଶ୍ରେଷ୍ଠୀପାରକୁ ଡାକି କହିଲା ତୁ ଅଇଛୁକା ଯା ବାପାଙ୍କୁ, କହିବୁ ତମ ଜୋଇଁଙ୍କୁ ବିପତ୍ତି ପଡ଼ିଛି ତମର ଯେତେକ ପାର ଅଛନ୍ତି ସମସ୍ତଙ୍କୁ ପଠାଇଦିଅ । ଶ୍ରେଷ୍ଠୀପାର ଗଲା ପାରରାଜାଙ୍କୁ କହିଲା । ସେ ତାଙ୍କ ରାଜ୍ୟରେ ଯେତେ ପାର ଥିଲେ ସବୁ ପଠାଇ ଦେଲେ । ପାରରାଜାଝିଅ କହିଲା ଯାଅ ବେଣ୍ଟପୋଖରୀ ଉପରେ ଷୋଳଶ ବୁଣାହୋଇଛି ତାକୁ ଏଣ୍ଡ ଗଛ ମଧ୍ୟରେ ଖୁଣ୍ଟିକରି ଢୋଲକସ୍ତୁରେ ପୂରାଇ ରଖି ଦେଇଯିବ । ପାରଯାକ ରାତି ନ ପାହୁଣୁ ଟହଲପଣ କରିଦେଇ ପାରରାଜାଝିଅଠାରୁ ବିଦା ହୋଇ ଗଲେ । ସକାଳୁ ଅସୁରୁଣୀ ଉଠିଲାକ୍ଷଣି କଳାରାଜନ ଷୋଳଶ ଢୋଲକସ୍ତୁ ଜମା କରିଦେଲା । ଅସୁରୁଣୀ ମନେ ମନେ ବିଚାରିଲା ଏଥିରେତ ଯାକୁ ମାରି ପାରିଲି ନାହିଁ, କଣ କରିବି ? ଆଉ ଏକ ବୁଦ୍ଧି ପାଞ୍ଚିଲା, କହିଲା ମୋର ବାଘଦୁଧ ଦରକାର, କାଲି ସକାଳକୁ ଏଠାରେ ଯେମନ୍ତ ଘରେ ବାଘଦୁଧ ଆଣି ଥୋଇଥିବୁତ ଆଉ, ନଇଲେ ତୋର ମୁଣ୍ଡ

ରହିବ ନାହିଁ । କଳାରାଜନ ସେ ଦିନ ସେହିପରି ମୁହଁ ଶୁଖେଇ ଦେଇ ଘରେ ବସିଥାଏ । ସେ ଦିନ ବାଘରଜାଙ୍କ ଝିଅ ଯାଇଲା । ସେ ପଚାରିଲା ଏମନ୍ତ ବିରସ କାହିଁକି ? ଏ ଅପୁରୁଣୀ ଯାହା ସବୁ କହିଥିଲା, ସବୁ କହିଗଲା । ବାଘରଜାଙ୍କ ଝିଅ କହିଲା ଏଥିପାଇଁ ଏତେ ଭାବନା କାହିଁକି ? ତମେ ନିଶ୍ଚିନ୍ତ ହୋଇ ବସ, ମୁଁ ସବୁ କରିଦେବି ସିନା । ସମସ୍ତେ ଖାଇପିଇ ସାରିଲାରୁ ବାଘରଜାଝିଅ ଶ୍ରେଷ୍ଠୀ ବାଘକୁ ପଠାଇ ବାପଘର ଗାଁରୁ ଦଶଭାର ବାଘଦୁଧ ଅଣାଇ ଅପୁରୁଣୀ ଦୁଆରେ ରଖାଇଦେଲା । ଅପୁରୁଣୀ ତହିଁ ଆରଦିନ ଉଠିଲା ବେଳକୁ ଦୁଆରେ ବାଘଦୁଧ ଥୁଆ ହୋଇଚି । ଅପୁରୁଣୀ ଦେଖିଲା, ସେହିପରି ମନେ ମନେ ହେଲା, ଏଥିରେତ ମାରି ପାରିଲି ନାହିଁ, କଣ କରିବି ? କଳାରାଜନକୁ କହିଲା କାଲି ସକାଳୁ ଦାଣ୍ଡଦୁଆରେ ଗୋଟିଏ ପୋଖରୀ ଖୋଳା ହୋଇଥିବ, ତହିଁରେ ଦୀପଦାଣ୍ଡି ବସିଥିବ, ଚାରିପାଖ ପଥର ପାହାଚବନ୍ଧା ହୋଇଥିବ, ରାଜହଂସ ଖେଳୁଥିବେ । ଏମନ୍ତ ଯେବେ ହୋଇଥିବ ତ ତୁ ଜୀବନରେ ଥିବୁ, ନଇଲେ ତୋ ମୁଣ୍ଡକାଟ ହେବ । ଏକଥା ବାଘରଜା ଝିଅ ଶୁଣିଲା, ଶ୍ରେଷ୍ଠୀ ବାଘକୁ ପଠିଆଇ ବାଘରଜା ଦେଶରେ ଯେତେ ବାଘ ଥିଲେ, ସମସ୍ତଙ୍କୁ ଅଣାଇଲା । ସେମାନେ ରାତି ରାତି ପୋଖରୀ ଖୋଳି, ଦୀପଦାଣ୍ଡି ବସାଇ, ପାହାଚ ବାନ୍ଧିଦେଇ ଚାଲିଗଲେ । ଅପୁରୁଣୀ ଉଠିଲାବେଳକୁ ପୋଖରୀ ଖୋଳା ହୋଇଚି, ଦେଖିଲା କଣ କହିବ ଭୁନ ହୋଇ ରହିଲା । ସେଦିନ କଳାରାଜନକୁ କହିଲା, ମୋର ଯେବେ ତୁ ଏକଥା ନ କରି ପାରିବୁ ତୋର ମୁଣ୍ଡ ରହିବ ନାହିଁ । ତୁ କାଲି ସକାଳୁ ମୋର ସପ୍ତପୁରୁଷଙ୍କୁ ଆଣି ମୋ ଦୁଆରେ ଠିଆ କରିଥିବୁ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବି । କଳାରାଜନ ଏକଥା ଯମରଜାଙ୍କ ଝିଅକୁ କହିଲା । ଯମରଜାଙ୍କ ଝିଅ କହିଲା ଏହି ଛାର କଥାପାଇଁ ଏତେ ଭାବନା କାହିଁକି ? ବାପାଙ୍କ ପାଖକୁ ଖବର ଦେଲେ ତ ସେ ପୁରର ସମସ୍ତଙ୍କୁ

ପଠାଇ ଦେଇ ପାରନ୍ତି, ସତ୍ପୁରୁଷ କଣ । ଯମରଜା ନିଅ ଶ୍ରେଷ୍ଠୀ ଯମକୁ ଡକାଇ ପଠାଇଦେଲା, କହିଲା ବାପାଙ୍କ, ଜହ୍ନବୁ ଉମା ଝିଅ ଜୋଇଁଙ୍କୁ ବିପତ୍ତି ପଡ଼ିଛି ତମର ଯୋଉ ଯମପୋଥି ଖଣ୍ଡ ଅଛି ତାକୁ ଦିଅ । ଶ୍ରେଷ୍ଠୀ ଯମ ଯାଇ ଯମରଜାଙ୍କଠାରୁ ପାଞ୍ଜି ଘେନି ଆସିଲା । କଳାରାଜନ ଏହି ଯମଗଣ ପୋଥିକି ନେଇ ଅସୁରୁଣୀ ଘର ଦୁଆର ମୁହଁରେ ପିଟାଇ ଲମ୍ବେଇ କରି ରଖିଦେଇ ବସି ରହିଲା । ଅସୁରୁଣୀ ଉଠି ଦେଖେ ଯେ ତାର ସତ୍ପୁରୁଷ ଦୁଆରେ ରୁଣ୍ଡ ହୋଇଅଛନ୍ତି । ଦେଖେ ଯେ ତାର ମା ଭଉଣୀଯାକ ସବୁ ମରି ତାଙ୍କ ସାଙ୍ଗେ ଅଛନ୍ତି । ସେମାନଙ୍କୁ ପଚାରିଲା ତମେ ସବୁ କେମନ୍ତ ମଲ ? ଏମାନେ କଳା-ରାଜନ ଯାହା ଯାହା କରିଥିଲା ସବୁ କହିଲେ । କଳାରାଜନ ସେଠୁ କଣକଣ ପୋଥିଖଣ୍ଡି ଘେନି ଆସିଲା, ଅସୁରୁଣୀର ଜୀବନ ଲାଉଟିକି ନେଇ ତାକୁ ଦେଖାଇ ଦେଲା । ଅସୁରୁଣୀ କହିଲା ମୋ ଲାଉ ଦେ, ଏ କହିଲା ମୋ ଛନ ସଙ୍ଗାତକୁ ଦେ, ଗୁରୁ ଘୋଡ଼ାକୁ ଦେ, ମୁଁ ଲାଉ ଦେବି । ଅସୁରୁଣୀ କଣ କଲା କାନ୍ତ କରି ପକାଇଲା ଯେ ଛନସଙ୍ଗାତ ବାହାରି ପଡ଼ିଲେ, ଘୋଡ଼ା ଗୁରୁଠା ବାହାରି ପଡ଼ିଲେ । କଳାରାଜନ ରାଜାଙ୍କୁ କହିଲା, ବାପା ! ଯାକୁ ରଖିବ କି ମାରିବ ? ରଜା କହିଲେ ଯାକୁ ଆଉ ରଖିନାହିଁ (୧) ମାରିଦେ, କଳାରାଜନ ଲାଉଟି ପିଟିଦେଲା ଯେ ଅସୁରୁଣୀର ପ୍ରାଣ ବାହାରି ଗଲା । ରଜା ପୁଅ ବୋହୂ ଘେନି ଆନନ୍ଦରେ ଘରଦୁଆର କଲେ, ମୁଁ ଗଲିକି କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।

———

( ୧ ) ଏହାକୁ ରଖିବା ଉଚିତ ନୁହେଁ ।




ଗୋଟିଏ ରଜା ଥିଏ, ତାର ସାତ ଭାରିଯା । ସେ ରଜାର ଅତଳାଚଳ ସମ୍ପତ୍ତି, ଭୋଗ କରିବ କିଏ ? ରାଣୀମାନଙ୍କର କାହାର ପୁଅ ଝିଅ ନ ଥାନ୍ତି । ରଜା ଭାରି ଚିନ୍ତା କରି ବନସ୍ତରେ ତପସ୍ୟା କରିବାକୁ ଗଲେ । ତପସ୍ୟା କରୁଥାନ୍ତି, ଦିନେ ଗୋଟିଏ ସାଧୁ ଗୋସାଇଁ ଆସିଲେ, ପଚାରିଲେ କାହିଁକି ଏପରି କଷ୍ଟ ସହି ତପସ୍ୟା କରୁଛ ? ରଜା କହିଲେ ମୋର ସାତ ଭାରିଯା, କାହାର କିଛି ସନ୍ତାନ ନାହିଁ । ସାଧୁ କହିଲେ ହଉ ଯା ତୋ ଗୁହାରି ଦିଅଁ ଶୁଣିଲେଣି, ଯା ଏ ଯୋଉ ଆମ୍ବଗଛ ଦିଶୁଛି, ସେଥିକି ଗୋଟିଏ ଠେକା ପକାଇବୁ, ସାତଟି ଆମ୍ବ ଝଡ଼ିବ, ନେଇ ଭାରିଯାମାନଙ୍କୁ ଦେବୁ, ବୁଝି ଲୋଭରେ ଆଉ ଠେକା ପକାଇବୁ ନାହିଁ । ରାଣୀମାନେ ସେ ଆମ୍ବ ଖାଇ ଗର୍ଭ ହେବେ, ସାତଟି ପୁଅ ଜନ୍ମ କରିବେ । ବାବାଜୀ ଏହା କହି ଗଲେ ବାହାରି । ରଜା ଗୋଟିଏ ଠେକା ପକାଇଲେ ଯେ ସାତଟି ଆମ୍ବ ପଡ଼ିଲା । ସାଧୁଙ୍କ କଥା ନ ମାନି ଲୋଭରେ ଆଉ ଗୋଟିଏ ଠେକା ପକାଇଲେ, ଆଉ ଆମ୍ବ ପଡ଼ିବ କଣ, ଯୋଉ ସାତଟି ପଡ଼ିଥିଲା ସେ ଗଛରେ ଲାଗିଗଲା । ରଜା କାନ୍ଦି ବୋବାଇ ମୁଣ୍ଡ କଚାଡ଼ି ହେଲେ, ବନସ୍ତଯାକ ସେ ସାଧୁଙ୍କୁ ଖୋଜିଲେ । ଖୋଜି ଖୋଜି ତାଙ୍କୁ ପାଇଲେ, ତାଙ୍କ ଆଗରେ ସବୁକଥା କହିଲେ । ସାଧୁ କହିଲେ ମୁଁ ପରା ମନା କରିଥିଲି, ତୁ କାହିଁକି ଫେର ଠେକା ପକାଇଲୁ ? ଏହା କହି ସେ ଗଛମୂଳକୁ ଗଲେ, ସାତଟି ଆମ୍ବ ପାରିଲେ, ରଜାକୁ ଦେଲେ, କହିଲେ ତୋର ସାତଟି ପୁଅ ହେବେ, ସବା ବଡ଼ପୁଅଟି ମତେ ଦେବୁ । ରଜା ଆମ୍ବ ନେଇ ଘରକୁ ଆସିଲେ, ରାଣୀମାନଙ୍କୁ ଗୋଟିଏ ଗୋଟିଏ ଦେଲେ । ରାଣୀମାନେ ଗର୍ଭ ହେଲେ, ସଥା-

ସମୟରେ ପାଞ୍ଚଟି ପୁଅ ଜନ୍ମ କଲେ । ଷଠୀ, ପଞ୍ଚୁଆଁଡ଼ି ଏକୋଇଶା ସବୁ ଗଲା, ପୁଅମାନେ ବଢ଼ିଲେ ଯେମନ୍ତ ଗୋଟିଏ ୨ ପୁନିଅଚନ୍ଦ୍ର । ବଡ଼ ପୁଅଟି ସମସ୍ତଙ୍କଠାରୁ ସୁନ୍ଦର ହୋଇଥାଏ । ପିଲାମାନେ ବଡ଼ ବଡ଼ ହୋଇ ଗଲେ, ପାଠ ପଢ଼ିଲେ, ଘୋଡ଼ାଚଢ଼ି ଶିଖିଲେ, ହାତୀମାର ଶିଖିଲେ; ରାଣୀମାନଙ୍କ ଗୋଡ଼ ଆଉ ତଳେ ପଡ଼ୁ ନ ଥାଏ । ହେଲେ ସେ ସାଧୁ ଗୋସେଇଁ ଆସିଲେ ପୁଅ ନବାପାଇଁ । ରଜା ଜାଣିକଲେ ବଡ଼ପୁଅକୁ ଲୋଭ କରି ଦେଲେ ନାହିଁ, ସବା ସାନପୁଅଟିକି ଦେଲେ । ତାକୁ ନେଇ ଯାଉଚନ୍ତି, ବାବାଜୀ ପଚାରିଲେ, ତୁମ୍ ଝାଡ୍ ଯାଓଁ ନା ଜଙ୍ଗଲ୍ ଯାଓଁ, ଏ କହିଲା ହାମ୍ ରଜାକା ବେଟା ରଜଦାଣ୍ଡମେ ଯାଓଁ । ବାବାଜୀ ସେଉଠୁ ଜାଣି ପାରିଲେ, ଏ ବଡ଼ପୁଅ ନୁହେ, ରଜା ମତେ ଠକି ଦେଇଚି ବୋଲି କହି ତାକୁ ନେଲେ, ରଜାଙ୍କୁ ଫେରାଇ ଦେଲେ, କହିଲେ ଏତ ମୋର ନୁହେଁ ମୁଁ କାହିଁକି ନେବି ? ରଜା ସାନପୁଅକୁ ରଖିଲେ, ତା ଉପର ପୁଅକୁ ଦେଲେ । ସେ ବି ସେହିପରି ବାବାଜୀଙ୍କି ବାଟରେ କହିଲା । ବାବାଜୀ ତାକୁ ବି ଫେରାଇ ଦେଲେ । ବଡ଼ପୁଅକୁ ଛାଡ଼ି ଆଉ ଚାରିପୁଅଙ୍କୁ ରଜା ସେହିପରି ଦେଲେ, ବାବାଜୀ ତାଙ୍କୁ ବି ଫେରାଇ ଦେଲେ । ସବା ଶେଷକୁ ରଜା ବଡ଼ପୁଅକୁ ଦେଲେ । ବାବାଜୀ ତାକୁ ପଚାରିଲେ, ବେଟା ! ଝାଡ଼୍ ଯାଓଁ କି ଜଙ୍ଗଲ ଯାଓଁ ? ଏ କହିଲା ବାବାଜୀକା ବେଟା, ବାବାଜୀ ଯିହାଁ ଯାଓଁ ହାମ୍ ଡାହାଁ ଯାଓଁ । ବାବାଜୀ ତାକୁ ନେଲେ ଘରେ ରଖିଲେ, ଅଗଣାର ଘରଦୁଆର ଦେଖାଇଲେ, ଖାଲି ଗୋଟିଏ ଘର ଦେଖାଇଲେ ନାହିଁ । ଏ ବାବାଜୀ ନୁହେ ଗୋଟାଏ ପିଲାଖିଆ ଅସୁର; ସାଧୁଗୋସେଇଁ ରୂପ ଧରି ଏତେ ନବରଙ୍ଗ କରୁଥିଲା ? ଦିନେ ବାବାଜୀ ତାକୁ ଘରେ ରଖି କୁଆଡ଼େ ଗଲା । ଏ ଯୋଉ ଘର ବାବାଜୀ ଦେଖାଇ ନ ଥିଲା, ସେ ଘର ଫିଟାଇ ଦେଖେ ତ ସେ ଘରେ ଗୁଡ଼ାଏ ପିଲାଙ୍କ ମୁଣ୍ଡ ଟଙ୍ଗା ହୋଇଚି । ଏ ମୁଣ୍ଡ ସବୁ ତାଙ୍କୁ ଦେଖି ହସିଲେ ।

ଏ ଘଣ୍ଟୁରଲୁ କାହିଁକି ବସିଲ ? ଏମାନେ କହିଲେ, ତୁ ତ ଏହିକ୍ଷଣି ଆମ ପାଖକୁ ଆସିବୁ । ବାବାଜୀ ଯାଇଛି ତେଲ ଆଣିବାକୁ, ତେଲ ଆଣିଲେ ତତେ କହିବ ଅନ୍ଧ୍ୟା ଖୋଲ, ଚୁଲ୍ଲୀ ଲଗା, ଠୁକୁଣା ବସା । ତୁ ଯଦି ଟିକିଏ ବୁଦ୍ଧି କରିବୁ ତେବେ ସେ ତତେ ମାରି ପାରିବ ନାହିଁ । ଯେତେବେଳେ ସେ କହିବ ଅନ୍ଧ୍ୟା ଖୋଲ, ତୁ କହିବୁ ମତେ ଆସେ ନା ତେମେ ଥରେ ଖୋଲି ମତେ ଶିଖାଇଦିଅ । ଏହିପରି ଯେତେ କଥା କହିବ, ତୁ କହିବୁ ମତେ ଶିଖାଇଦିଅ ମୁଁ କରିବି । ସାଧୁ ଅନ୍ଧ୍ୟା ଖୋଲି, ଚୁଲ୍ଲୀ ଲଗାଇ, ଠୁକୁଣା ବସାଇ, ତହିଁରେ ତେଲ ଅଟାଇ ତେଲ ଯେତେବେଳେ କଡ଼ ୨ ହୋଇ ଫୁଟିବ, ତତେ କହିବ ତେଲରୁ ପାଣି ମରିଲାଣି କି ନା ଦେଖିଲୁ, ତୁ କହିବୁ ତେମେ ଆଗେ ଦେଖ । ସେ ଯେତେବେଳେ ନଇଁପଡ଼ି ତେଲ ଠୁକୁଣାକୁ ଅନାଇବ, ତୁ ତା ମୁଣ୍ଡକୁ ତେଲ ଠୁକୁଣାରେ କରି ମାଡ଼ିଦେବୁ ଯେ ସେ ମରିଯିବ, ସେ ଯାହା ଆଉ ତେଲ ଠୁକୁଣାରେ ତୋ ମୁଣ୍ଡ ମାଡ଼ି ଦେଇ ମାରିପକାନ୍ତା, ତା ଆଉ କରି ପାରିବ ନାହିଁ । ଏ କଥା ଶୁଣି, ସେ ଘର ବନ୍ଦ କରି ଦେଇ ଆସି ବସିଥାଏ । ବାବାଜୀ ତେଲ ନେଇ ଆସିଲା, ମୁଣ୍ଡମାନେ ଯେମନ୍ତ ୨ କହିଥିଲେ ସେହିପରି କଲା । ରଜାପୁଅ ଶେଷକୁ ବାବାଜୀର ମୁଣ୍ଡକୁ ଫୁଟନ୍ତା ତେଲରେ ମାଡ଼ିଦେଲା ଯେ ସେ ମରିଗଲା । ରଜାପୁଅ ମନେ ବିଚାରିଲା ଏ ମୁଣ୍ଡମାନଙ୍କ ଯୋଗୁଁ ସିନା ମୁଁ ଉଦ୍ଧାର ପାଇଲି ମୁଁ ଏମାନଙ୍କୁ କିପରି ଉଦ୍ଧାର କରିବି, ସେଇଠି ବସି କାନ୍ଦିଲା । ଆମି ରାତି ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଚନ୍ତି । ପାର୍ବତୀ କହିଲେ ରହିବଟି, ଆଜି କାହିଁକି ପୃଥିବୀଟା ଭାରି ଲାଗୁଛି ? ଈଶ୍ୱର କହିଲେ ଚାଲ ଦେଖା ଆମର ସେଥିରେ କ'ଣ ଅଛି । ପାର୍ବତୀ କହିଲେ ଆମରତ କିଛି ନାହିଁ, ଆମେ ସୃଷ୍ଟି ଦିଅଇଚୁଁ କାହିଁକି ? ଈଶ୍ୱର ପାର୍ବତୀ ଗଲେ ସେ ରଜାପୁଅ ପାଖକୁ, ତାକୁ ସବୁ ପଚାରିଲେ । ରଜାପୁଅ ସବୁ କହିଗଲା, ଯେପରି ଜନ୍ମହେଲା, ଏଠାକୁ ଯେପରି ଆସିଲା

ମନ୍ତ୍ରୀମାନେ ଯାହା କହୁଥିଲେ, ସବୁ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଗଲା। ଈଶ୍ୱରପାଙ୍କଙ୍କ ଶୁଣିଲେ, କହିଲେ ହଉ ନେଳିକ ମୁହଁ ବୁଲୁ। ଏ ନେଳିକ ମୁହଁ ବୁଲିଗଲା, ଈଶ୍ୱରପାଙ୍କଙ୍କ ମୂଳପାଣି କରୁ ଜନ୍ମମୁଠା ଛିଞ୍ଚିଦେଲେ ଯେ, ସବୁ ହାଡ଼ ଚମ ଏକାଠି ଲାଗିଗଲା, ଆଉ ଜନ୍ମମୁଠା ଛିଞ୍ଚିଦେଲେ ଯେ ସମସ୍ତେ ଜୀଇ ଉଠିଲେ। ଈଶ୍ୱରପାବନ୍ଙ୍କ ଉଭେଇ ଗଲେ। ଏମାନେ ଯେ ଯାହା ଘରକୁ ଗଲେ; ରଜାପୁଅ ତା ଘରକୁ ଗଲା, ଯୁବରାଜ ହେଲା; ସୁଖରେ ଯୁବରାଇଜ କଲା। ମୁଁ ଗଲାକୁ କଥା କହୁଲା ନାହିଁ; ମୋ କଥାଟି ସରିଲା ଇତ୍ୟାଦି।





ଚମାରୁଣୀଝିଅ କଥା।

ଗୋଟିଏ ଦେଶରେ ରଜାଝିଅ, ମନ୍ତ୍ରିଝିଅ, ସାଧବଝିଅ, କୋଟୁଆଳଝିଅ ଚାରି ସଙ୍ଗାତ। ଚାରିହେଁ ଏକାଠି ବନସ୍ତରେ ଯାଇ ଖେଳନ୍ତି। ବନ-କର ମଣ୍ଡାପିଠା ହୋଇଥିଲା, ତାର ସଙ୍ଗାତ ବନସ୍ତ ଭିତରେ ଖାଇବାକୁ ପିଠା ନେଇକରି ଗଲେ। ଖାଉଚନ୍ତି ମନ୍ତ୍ରିଝିଅ କହିଲା ହେ, ମଣ୍ଡାଗଛ ଲଗାନ୍ତୁଇଁ, ଆଉ ସମସ୍ତେ କହିଲେ ହଉ। ଗୋଟିଏ ମଣ୍ଡାପିଠାଟିଏ ପୋତିଦେଲେ, କହିଲେ କାଲିକି ଯେବେ ଗଛ ହୋଇଥିବୁ ନ ହେଲେ ମାନୁଷର କଣ୍ଠରେ ହାଣିବୁ। ଏହିପରି କହି କହି ପିଠାଟି ଗଜା ହେଲା, ଗଛ ହେଲା, ଗଛଟି ବଢ଼ିଲା, ଫୁଲ ଫୁଟିଲା, କଷି ଧରିଲା, ମଣ୍ଡାପିଠା ଫଳିଲା। ଗଛଟି ମଣ୍ଡାପିଠାରେ ଲଦି ହୋଇଗଲା, କପୁରର ଛେନା ଶାକର କର୍ପୂର ପୁରଥା ପିଠାଟିମାନ! ଗୋଟିଏ ଖାଇଲେ

ମନରୁ ଗ୍ଲାନିବ ନାହିଁ । ଶୃଗ ଧଙ୍ଗାଳ ପ୍ରତିଦିନ ସେ ବନସ୍ତକୁ ଯାନ୍ତି, ମଣ୍ଡାଗଛରେ ଚଢ଼ି ପିଠା ଖାନ୍ତି । ଦିନେ ଗଛରେ ଚଢ଼ି ପିଠା ଖାଉ-ଥାନ୍ତି, ଏହି ସମୟରେ ବୁଢ଼ୀଅସୁରୁଣୀ ସେହି ବାଟରେ ଯାଉଥିଲା, ମଣ୍ଡା-ଗଛ ମୂଳରେ ପହଞ୍ଚି କହିଲା ହଇରେ ଝିଏ, କଣ ଖାଉଚ, ମତେ ଗୋଟିଏ ଦିଅନ୍ତ । ମନ୍ତ୍ରୀଝିଅ ଗଛ ଅଗରେ ଥିଲା, ତା ତଳକୁ କଟୁଆଳ ଝିଅ, ତା ତଳକୁ ସାଧବଝିଅ, ମୂଳପାଖକୁ ରଜାଝିଅ ବସିଥିଲା, ମନ୍ତ୍ରୀଝିଅ ପିଠାଟିଏ ତୋଳି କଟୁଆଳଝିଅ ହାତକୁ, କଟୁଆଳଝିଅ ସାଧବଝିଅ ହାତକୁ, ସାଧବଝିଅ ରଜାଝିଅ ହାତକୁ ବଢ଼ାଇ ଦେଲା । ରଜାଝିଅ ବୁଢ଼ୀ ଅସୁରୁଣୀ ହାତକୁ ଦେଉଚ, ଅସୁରୁଣୀ ତାକୁ ଧରନେଇ କାନ୍ଧରେ ବସାଇ ଚାଲିଲା । ତିନି ସଙ୍ଗାତଯାକ କାନ୍ଦି ବୋବେଇ ଘରକୁ ଗଲେ, ସବୁକଥା ରଜା ଆଗରେ କହିଲେ । ରଜାଙ୍କର ବହୁତ ଖୋଜା ଲଗିଲା, ଝିଅକୁ କୋଉଠି ପାଇଲେ ନାହିଁ । ଏଣେ ଅସୁରୁଣୀ ତାକୁ ନେଇ ନିଜ ଘରେ ପହଞ୍ଚିଲା । ଅନେକ ଗହନ ବନସ୍ତ ଭିତରେ ମେଘନାଦ ପାଚେରି ବୁଲିଚି, ତାହା ଭିତରେ ଅସୁରୁଣୀର ଘର । ଅସୁର ଅସୁରୁଣୀ ମଣିଷଖିଆନ୍ତି । ଏ ବୁଢ଼ୀଅସୁରୁଣୀ ରଜାଝିଅକୁ ଖାଇଲା ନାହିଁ, ଘରେ ରଖି ଆପଣାର ଝିଅପରି କରିଥାଏ, ତାକୁ ସବୁ ଭଲ ଜିନିଷ ଆଣି ଖାଇବାକୁ ଦିଏ । ରଜାଝିଅ ମନ କେଉଁଥିରେ ନ ଥାଏ, ସବୁବେଳେ ଖାଲି କାନ୍ଦୁଥାଏ । କେତେଦିନ ଗଲା, ବୁଢ଼ୀଅସୁରୁଣୀ ରଜା ଝିଅକୁ ସବୁଘର ଦେଖାଇଲା, ଖାଲି ଯେଉଁ ଘରେ ମଣିଷ ଖାଇ ହାଡ଼ ପକାଇଥାଏ, ସେ ଘର ଦେଖାଇଲା ନାହିଁ । ପ୍ରତିଦିନ ଅସୁରୁଣୀ ଚର-ବାକୁ ଯାଏ, ସେ ନ ଥିଲା ସମୟରେ ରଜାଝିଅ ସେ ସବୁ ଘର ଦେଖେ, ଭୟରେ କାନ୍ଦେ । ରଜାଝିଅ ଦିନେ ଅସୁରୁଣୀଘରୁ ଖଣ୍ଡିଏ ପୋଥି ପାଇଲା, ତହିଁରେ ରୂପ ପରିବର୍ତ୍ତନ ବିଦ୍ୟା ଥିଲା । ରଜାଝିଅ ତାକୁ ସବୁ ଶିଖିଲା । ଏହିପରି କେତେଦିନ ଅସୁରୁଣୀ ଘରେ ରହିଲା, ବେଶ ବଡ଼ ଝିଅଟିଏ ହେଲା । କିନ୍ତୁ ମନ କାହିଁରେ ଲାଗୁ ନ ଥାଏ, ଅସୁରୁଣୀ

ବାହାରକୁ ଗଲା । ତନୁ ମନ କାହିଁରେ ଲାଗୁ ନ ଥାଏ, ଘାଟେଚଣ୍ଣି କଣାରେ ବାହାରକୁ ଅନାଉଥାଏ । ଦିନେ ସେ ବନସ୍ତକୁ ଆରଦେଶର ରଜାପୁଅ ପାରିଧିକି ଆସିଥିଲା । ବନସ୍ତ ଭିତରେ ଦିବ୍ୟସୁନ୍ଦର ଘରଟିଏ ଦେଖି ତା ଭିତରକୁ ଗଲା, ଦେଖିଲା ରଜାଝିଅ ବସି କାନ୍ଦୁଛି । ରଜାଝିଅ ଯୁବାକୁ ଦେଖି କହିଲା ତେମେ କିଏ? ଏଠାକୁ କାହିଁକି ଆସିଲ ? ଏ ଅସୁରୁଣୀଘର, ଅସୁରୁଣୀ ଆସି ତମକୁ ଦେଖିଲେ ଏହିକ୍ଷଣି ଖାଇଯିବ, ତେମେ ପଳାଅ । ରଜପୁଅ ରଜାଝିଅର ପରିଚୟ ପଚାରିଲା, ସେ ଆଦ୍ୟଠାରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାପୁଅ କହିଲା ମୁଁ ତମକୁ ଏଠାରୁ ଉଦ୍ଧାର କରିନେବି, ତେମେ ଆଜ ବୁଢ଼ୀଅସୁରୁଣୀ ଆସିଲାରୁ ତାକୁ ପଚାରିବ, ତା ଜୀବନ କେଉଁଠି ଅଛି । ଏହିପରି କଥାବାର୍ତ୍ତା ହେଉଚନ୍ତି । ଅସୁରୁଣୀ ଆସିଲା । ରଜାପୁଅକୁ ଆଉ ବୁଦ୍ଧି ଦିଶିଲାନାହିଁ ରଜାଝିଅ ଅସୁରବିଦ୍ୟାବଳରେ ରଜାପୁଅକୁ ମାଛି ଆଉ ଘୋଡ଼ାକୁ ଭଅଁର କରିଦେଲା,ସେମାନେ ଓଳି ଉପରେ ବସି ରହିଲେ ଅସୁରୁଣୀ ଆସି କହିଲା କେଉଁଠି ନରଦେହ ବାସୁଚି, ଘରର ଏକଣ ସେକଣ ସୁଙ୍ଘିଲା । ରଜାଝିଅ କହିଲା ଏଠାକୁ ଆଉ ମଣିଷ କେଉଁଠୁ ଆସିବ ? ମତେ ଯନ୍ଦ ଇଚ୍ଛା ହେଉଚି ଖାଅ । ଅସୁରୁଣୀ ଏଥିରେ ଭୁଲିଗଲା, ଖାଇଲା ପିଇଲା ବସିଲା, ରଜାଝିଅକୁ କହିଲା ଝିଅଲୋ ! ମୁଣ୍ଡରୁ ଗୋଟାଏ ଉକୁଣି ଦେଖନ୍ତୁ । ରଜାଝିଅ ମୁଣ୍ଡ ଦେଖିଲା, ଗୋଡ଼ରୁ କଣ୍ଟା କାଢ଼ିଦେଲା, ଯୁବା ସବୁ କରୁଚି ବୁଢ଼ୀକୁ ପଚାରିଲା ହଇଲୋ ମା, ତୁ ମରିଗଲେ ମୁଁ କେଉଁଠି ରହିବି ? ବୁଢ଼ୀକହିଲା, ଅସୁରୁଣୀ କେବେ ସହଜରେ ମରନ୍ତି, ମତେ ଫେର୍ କିଏ ମାରିବ ? ଆରଦେଶ ରଜାର କେଣ୍ଟପାଖରେ ଅଛି, ତହିଁରେ ସାତତାଳ ପାଣି ସାତତାଳ ପଙ୍କ, ତା ଭିତରେ ଗୋଟିଏ ଫଡ଼ୁଅ ଅଛି, ଫଡ଼ୁଅ ଭିତରେ ଗୋଟିଏ ଭଅଁର, ସେ ଭଅଁରର ବେକ ଯଦି କେହି ମୋଡ଼ିଦେବ ତେବେ ମୁଁ ମରିବି । ଏହା କିଏ ଜାଣେ ଯେ କିଏ କରିବ ? ରଜାପୁଅ ମାଛି

ହୋଇ ଓଗଉପରେ ଏସବୁ ଶୁଣୁଥାଏ, ଅପ୍ସରୁଣୀ ଫେର୍ ଚଢ଼ିବାକୁ ଗଲା, ରଜାପୁଅ ନିଜରୂପ ହୋଇ ଆପଣା ଦେଶକୁ ଗଲା । ମୂଳଅ ଉକାଳ ହେଣ୍ଡପୋଖରୀର ପାଣି ବୁହାଇଲା, ପଙ୍କ କଢ଼ାଇଲା, ପଡୁଅଟିକି କାହାର କରି ଭିଁଅ ଉତରୁ ଭିଅଁ ରତ୍ନକ କାଢ଼ିବେକ ମୋକ୍ଷ ଦେଲା । ଏଣେ ଅପ୍ସରୁଣୀ ଘୋରଗର୍ଜନ କରି ମରିଗଲା । ରଜାପୁଅ ବନସ୍ତକୁ ଯାଇ ରଜାଝିଅକୁ ଘୋଡ଼ାରେ ବସାଇ ଆପଣା ଦେଶକୁ ଘେନି ଆସିଲା । ଗାଁ ଖଣ୍ଡିଦୂର ଅଛି, ରଜାଝିଅକୁ ଗୋଟିଏ ଉସଠଗଛମୂଳେ ବସାଇ କହିଲା ତମେ ଏଇଠି ବସିଥାଅ, ମୁଁ ଗାଁଠାରୁ ସକଳ ସାମନ୍ତ ପାଲିଙ୍କି ସୁଅର ପଲଟଣ ଆଣି ତମକୁ ଏଇଠୁ ବାହାହୋଇ ଘରକୁ ନେଇଯିବି । ଏହାକହି ରଜାପୁଅ ଘରକୁ ଗଲା । ରଜାଝିଅ ଯେଉଁ ଉସଠ ଗଛମୂଳେ ବସିଥିଲା ତାହା ପାଖରେ ଗୋଟିଏ କୂଅ; ସେ ନିକଟରେ ଗୋଟିଏ ଚମାର ଘର । ଚମାରଝିଅକୁ ମା କୂଅରୁ ପାଣି ଆଣିବାକୁ ପଠାଇଲା । ସେ କୂଅରେ ମାଟିଆ ପକାଇ ଭାଙ୍ଗିଦିଏ ଘରକୁ ଫେରିଯାଏ, ଏହିପରି ଶହେ କି ଦୁଇଶ ମାଠିଆ ଭାଙ୍ଗିଲା । ଶେଷରେ ମା ଖପା ହୋଇ ଗୋଟାଏ ତମର ମାଟିଆ ଦେଲା । ଚମାରଝିଅ ତମମାଠିଆ କୂଅମୂଳକୁ ଆଣି ସେଇଠି ବସି କାନ୍ଦିଲା । ଏହା ଦେଖି ରଜାଝିଅକୁ ହସ ମାଡ଼ିଲା । ଚମାରଝିଅକୁ କହିଲା ମାଟିର ମାଠିଆ ଭାଙ୍ଗୁ ବୋଲି କି ତମର ମାଠିଆ ଭାଙ୍ଗିବୁ ? ଚମାରଝିଅ ରଜାଝିଅ ପାଖକୁ ଆସି ତାକୁ ତାହାର ପରିଚୟ ପଚାରିଲା । ରଜାଝିଅ ସବୁ କଥା କହିଦେଲା । ଏହିପରି କଥାବାର୍ତ୍ତା ହେଉ ହେଉ ଚମାରଝିଅ ରଜାଝିଅକୁ କହିଲା, ମତେ ଟିକିଏ ତମ ଝୁଣ୍ଟିଆ ଦିଅନ୍ତୁ, ଲଗାନ୍ତି କେମନ୍ତ ଦିଶନ୍ତି । ଝୁଣ୍ଟିଆ ନେଇ ଲଗାଉ ଲଗାଉ ରଜାଝିଅଠାରୁ ସବୁ ଅଳଙ୍କାର ନେଇ ଲଗାଇଲା । ରଜାଝିଅ ଓଲୁ କଣ୍ଠ ବୁଝି ପାରିଲା ନାହିଁ, ଶେଷରେ ରଜାଝିଅକୁ କହିଲା ତମେ ମୋର ପିନ୍ଧାଲୁଗାଖଣ୍ଡ, କଂସାମୁଦି ପିନ୍ଧନ୍ତୁ କିପରି ଦିଶନ୍ତି ଦେଖନ୍ତୁ ।

ରଜାଝିଅ ସେହିପରି କଲା, ଚମାରଝିଅର ଲୁଗାପିନ୍ଧିଲା । ଏହିପରି ବେଶ ବଦଳାଇଦେଲାରୁ ଚମାରଝିଅ ରଜାଝିଅକୁ କୂଅପାଖକୁ ଡାକି ନେଇ ତାକୁ କୂଅକୁ ଠେଲିଦେଲା । ରଜାଝିଅ କୂଅରେ ପଡ଼ି ଗୋଟିଏ ପଦ୍ମଫୁଲ ରୂପରେ ରହିଲା । ଚମାରଝିଅ ରଜାଝିଅର ବେଶ ପିନ୍ଧି ତଳେ ଗଛମୂଳେ ବସି ରହିଲା । ଏଣେ ରଜାପୁଅ ସଇନସାମନ୍ତ ଅଣି ଦେଖେ ଯେ ରଜାଝିଅର ରୂପ କପଟ ଅସୁନ୍ଦର ହୋଇଯାଇଛି କେତେ ଭାବିଦେଲା କିଛି ବୁଝିପାରିଲା ନାହିଁ; କାହାକୁ କିଛି ନ କହି ବାହା ହେଲା । ଚମାରଝିଅ ସେ ଦେଶର ରାଣୀ ହେଲା । ଏହିପରି କେତେଦିନ ଗଲା, ଏଥିମଧ୍ୟରେ ବୁଢ଼ାରଜା ମରିଗଲେ, ସେ ରଜାପୁଅ ରଜା ହେଲା । ଦିନେ ରଜା ବୁଲିବାକୁ ଯାଉଚନ୍ତି, ସେହି କୂଅପାଖରେ ପହଞ୍ଚିଲେ, ଅତି ସୁନ୍ଦର ପଦ୍ମଫୁଲଟିଏ ଦେଖି ତୋଳି ନେଇ ରାଣୀଙ୍କି ଦେଲେ । ରାଣୀ ବୁଝିଲେ ଯେ ଯେଉଁ କୂଅରେ ରଜାଝିଅକୁ ପକାଇ ଦେଇଥିଲେ, ସେହି କୂଅରେ ଏ ପଦ୍ମଫୁଲ ଫୁଟିଥିଲା । ରଜାଝିଅ ଏ ପଦ୍ମଫୁଲ ହୋଇ ଫୁଟିଛି ଏହା ଜାଣିପାରି ସେ ଫୁଲଟିକି ଚିକି ଚିକି କରି ଛିଣ୍ଡାଇ ନଳାମୁହଁକୁ ପକାଇଦେଲେ । କିଛିଦିନ ପରେ ରଜାଝିଅ ନଳାମୁହଁରେ ଲାଉଗଛଟିଏ ହୋଇ ଉଠିଲା । କହୁଚ ମାଡ଼ିଲା, ଫଳ ଯେ ଫଳିଲା ଅଗୋଚର (୧) ରଜା ଦିନେ ଗୋଟିଏ ଲାଉ ଭୁଜଣ କରିବାକୁ କହିଲେ । ରାଣୀ ଲାଉ ଭୁଜଣ ବସାଇଚନ୍ତି, ଲାଉ ଘଡ଼ି ଘଡ଼ି ବାହାନାରେ ଶବ୍ଦ କଲା, 'ଘଡ଼ ଘଡ଼ ଲାଉ, ଚମାରୁଣୀ ହାତରେ କି ରଜାପୁଅ ଖାଉ ? ଏହିପରି ତିନିଥର ହେଲା । ଚମାରଝିଅ ଶାଶୁକୁ ଡାକି କହିଲା ଦେଖ ଲାଉ କଣ କହୁଚି । 'ଘଡ଼ ଘଡ଼ ଲାଉ ରଜାପୁଅ ମୁଣ୍ଡ ନୁଆରାଣୀ ଖାଉ ।' ଶାଶୁ ଏହା ଶୁଣି ଲାଉକୁ ବାର-ଅଙ୍କେ ଫୋପାଡ଼ି ଦେବାକୁ କହିଲେ, ରାଣୀ ଫୋପାଡ଼ିଦେଇ ନିଶ୍ଚିନ୍ତ

(୧) ଅସଂଖ୍ୟ ।

ହେଲେ । ରଜାପୁଅ ଖାଇଲାବେଳେ ଲାଉ ମାଗିବାରୁ ରାଣୀମା କହିଲେ, ଲାଉ ଏମନ୍ତ ଅମଙ୍ଗଳ କଥା କହିବାକୁ ଧମକାଇଦେଲେ । ଏହିପରି କେତେଦିନ ଗଲା, ସେ ଘରର ଲାଉ ଅନ୍ୟ କେହି ଖାଆନ୍ତି-ନାହିଁ । ଦିନେ ରଜା ବାରିଅଡ଼େ ବୁଲୁଁ ଦେଖିଲେ ଯେ, ଗୋଟିଏ ଉତ୍ତମ ସୁନ୍ଦର ଲାଉଗଛ ହୋଇଛି, ତହିଁରେ ଗୋଟିଏ ଲାଉଫଳ ଫଳିଛି । ରଜାଙ୍କର ଲାଉଟି ଖାଇବାକୁ ଲୋଭ ହେଲା, ତୋଳି ଆଣି ଘରେ ଥୋଇଦେଇ ଗାଧୋଇ ଆସିଲେ । ଖାଇବା ସମୟରେ ଛୁରି ଲଗାଇ ଲାଉଟି ଯେତେବେଳେ କାଟିଦେଇଛନ୍ତି, ସେହିପରି ଲାଉଭିତରୁ ସେ ରଜାଝିଅ ବାହାରିପଡ଼ିଲା !! ରଜା ଆଚମ୍ବିତ ହୋଇଗଲେ, ପଚାରିଲେ ତୁମେ କିଏ ? ରଜାଝିଅ ଆପଣାର ପରିଚୟ ଦେଲା ଆଉ ଚମାରଝିଅ ଯାହା ୨ କରିଥିଲା ସବୁ କହିଲା । ରଜାଝିଅକୁ ଗୋଟିଏ ଘରେ ଲୁଚାଇ କରି ରଖି ରଜା ରାଣୀମାଙ୍କ ପାଖକୁ ଯାଇ କହିଲେ, ବୋଉ ! ଆଜ ଗୋଟିଏ ସେ ଲାଉରୁ ଭୁଜଣ କର । ନୂଆରାଣୀ ଏଥିପାଇଁ ମଙ୍ଗୁ ନଥାଏ, ରଜା ଏକଜିଦ କରିବାରୁ ଭୁଜଣ ରାନ୍ଧିବାକୁ ଗଲା । ରଜା ରାଣୀମାଙ୍କ ସନ୍ଧିରେ ସେଠାରେ ବସିରହିଥିଲେ, ଲାଉ କଣ କହିବ ଶୁଣିବାକୁ । ଲାଉ ଘଡ଼ ୨ ହୋଇଆସିଲା, ଅଗଯତ ଶବ୍ଦ କଲା, 'ଘଡ଼ ୨ ଲାଉ, ଚମାରୁଣୀ ହାଣ୍ଡି କି ରଜାପୁଅ ଖାଉ, ରାଣୀ ହସ୍ତରେ ଥରୁ-ଥାଏ ରଜା କିଛି ନ କହି ଚାଲିଗଲେ, ଦାଣ୍ଡଦୁଆରେ ଗୋଟାଏ ଛୋପର ଖୋଳାଇ, ରାଣୀଙ୍କି ଡକାଇଲେ, ତହିଁରେ ଧାନ କେତେ ସମାଇବ ଅନ୍ଦାଜ କରିବାକୁ । ରାଣୀ ବଡ଼ ମନକଷ୍ଟରେ ଛୋପର-ପାଖକୁ ଗଲେ, ପହଞ୍ଚିଲାକ୍ଷଣି ରଜା ଭିତରକୁ ଠେଲି ଦେଲେ, କହିଲେ 'ଯା ଚମ୍ପମାଟିଆରେ ପାଣି କାଢ଼ୁଥା' । ତାଳକଣ୍ଟା ଉପର କଣ୍ଟା ଛାଟିଦେଲେ ମାଟି ଚଢ଼ାଇଦେଲେ ସେ ରଜାଝିଅକୁ ବଭା ହୋଇ ସୁଖରେ ଘର ଦୁଆର କଲେ, ମୁଁ ତାଙ୍କ କଥା ନ କହିଲେ, ମୋ କଥାଟି ସରିଲା ଇତ୍ୟାଦି ।



## ସାଧବବୋହୂ ଲୀଳାବତୀର କଥା ।

ଗୋଟିଏ ସାଧବଥାଏ, ତାହାର ସାତପୁଅ, ସାତବୋହୂ, ସବା ସାନ ବୋହୂଟିର ନାମ ଲୀଳାବତୀ । ଦିନକର ଗୋଟିଏ ଯୋଗୀ ଭିକ ମାଗି ଅସିଥିଲା, ତାର କେମନ୍ତ ଲୀଳାବତୀ ଉପରେ ନଜର ପଡ଼ିଲା । ସେ ସାଧବଦୁଆରେ ଭିକପାଇଁ ଡାକୁଥାଏ, ସେ ଯେତେ ଭିକ ଯାଚିଲେ କାହାର ହାତରୁ ନେଲା ନାହିଁ; କହିଲା ଯଦି ତମ ଘରର ସାନବୋହୂ ଭିକ ଦିଦ ତ ନେବି, ନହିଲେ ବେକରେ ଛୁରିମାରି ମରିବି । ଭିକାରିକୁ ଫେରାଇ ଦେବାର ନୁହେଁ, ସମସ୍ତେ କହିଲେ ସାନବୋହୂ ଖିଡ଼କି ବାଟରେ ହାତ ଗଳାଇ ଭିକ ଦେଉ । ଏ ଯୋଗୀ ସିଦ୍ଧମନ୍ତ୍ର ଜାଣେ, ଭିକନେଲାବେଳେ ଲୀଳାବତୀଙ୍କ କଣ ସିଦ୍ଧ କରିଦେଲା ଯେ, ଲୀଳାବତୀ ଯୋଗୀ ସାଙ୍ଗରେ କୁକୁର ହୋଇ ଗୋଡ଼ାଇଲା । ଘରେ ପହଞ୍ଚି ଯୋଗୀ ଲୀଳାବତୀକୁ ମଣିଷ କରି ତାକୁ ଘରେ ରଖିଲା, ଏଣେ ଲୀଳାବତୀର ବର ଆଉ ଦେଢ଼ଶୁରମାନେ ତାକୁ ଫେରାଇ ଆଣିବାକୁ କେତେ ଉପାୟ କଲେ । ପହିଲେ ବଡ଼ଦେଢ଼ଶୁର ଯୋଗୀ ପାଖକୁ ଗଲା । ଯୋଗୀ ପଦୁଅ ବୋଲି ଯୋଗୀ ଘରକୁ ଗଲା ନାହିଁ, ସେ ଗାଁରେ ଗୋଟିଏ ମାଳୁଣୀଘରେ ରହିଲା । ସେ ଗାଁରେ ଯେ ଲୋକ, ସମସ୍ତଙ୍କୁ ଯୋଗୀ ମନ୍ତ୍ର ଜୋରରେ କାହାକୁ ପଶୁ, କାହାକୁ ପକ୍ଷୀ କରିନେଇଥାଏ, ଖାଲି ଯେ ମାଳୁଣୀକି, ଲୀଳାବତୀ ପାଇଁ ଫୁଲ ଗୁନ୍ଥି ଦେବ ବୋଲି ରଖିଥାଏ । ସାଧବପୁଅ ମାଳୁଣୀଘରେ ଅଛି, ଯୋଗୀ ଫୁଲ ନେବାକୁ ଅସିଲା, ମନ୍ତ୍ରବଳରେ ଜାଣିଲା ଯେ ସାଧବପୁଅ ସେଠିକି ଅସିଛି । ତାକୁ ମାଳୁଣୀଘରୁ ତାହାର କରିନେଇ

ଦାଣ୍ଡରେ ଗୋଟାଏ ନଡ଼ିଆ ଗଛ କରିଦେଲା, ତା ଘୋଡ଼ାକୁ ତାଳଗଛ କରିଦେଲା । ଏହାପରେ ଅଉ ଛ ଭାଇଯାକ ଲୀଳାବତୀଙ୍କ ଆଣିବାକୁ ଗଲେ, ସମସ୍ତେ ସେଇଥିରେ ନଡ଼ିଆଗଛ ହୋଇ ରହିଲେ । ଅଉ କିଏ ଅଛି ଯେ କିଏ ଯିବ, ସମସ୍ତେ ଭୂନଗାହ ହୋଇ ରହିଲେ । ବଡ ଭାଇ ଭାରିଯାର ଗର୍ଭ ହୋଇଥାଏ, ତାର ଗୋଟିଏ ପୁଅ ହେଲା । ପୁଅଟିକୁ ସାତ ଛ ବର୍ଷ ହେଲାରୁ ତାକୁ ଅବଧାନ ପାଖରେ ପାଠ ପଢ଼ାଇଲେ । ପୁଅଟିର ନା ଦେଇଥାନ୍ତି ବଣିକେସନ । ବଣିକେସନ ଚାଟଶାଳିରେ ପଢ଼ୁଥାଏ, ଦିନେ ତାହାର ଖଡ଼ୀ ଗଡ଼ିଗଲା । ସେ ମାଗିବାରୁ, ଅଉ ପିଲାମାନେ ତାକୁ କହିଲେ, 'ଅଣବାପିଅ ରେ ପଣ ଯାଉଚି ନା ଖଡ଼ୀ ଗଡ଼ିଗଲା ଦେ ବୋଲୁଚି' । ବଣିକେଶନ ତାର ବାପ କିଏ ଜାଣେ ନା, କି ଅନ୍ୟ ପିଲାମାନେ କେହି ଜାଣନ୍ତି ନାହିଁ । ଏଇଥି ଲାଗି ପିଲାମାନେ ତାକୁ ଏପରି କହିଲେ । ବଣିକେସନ ସେଦିନ ଚାଟଶାଳିରୁ ଆସି ବଳେଇ ଗନ୍ଧ ଶଣ ମୁଣ୍ଡାମାଣ୍ଡି କରି ଏହାପରେ ଗୋଟାଏ ଘରେ ଶୋଇଲା । କେତେଠାଇଁ କେତେ ଖୋଜିଲେ, କୋଉଠି ତାକୁ ପାଇଲେ ନାହିଁ । ତାର ମା କାନ୍ଦୁଣି ମାନ୍ଦୁଣି ହୋଇ ତାକୁ ଖୋଜୁଥାଏ, 'ବଳେଇ କୋଇଲା ମ୍ୟାଉଁ, ଦୁଧଭାତକର ଗୁଣ୍ଡିଏ ଖାଉଁ ପୁଅକୁ ଦେଖାଇ ଦେଉଁ ।' ବଳେଇକୁ ଦୁଧଭାତ ଖାଇବାକୁ ଦେଲେ, ବଳେଇ ଖାଇସାରି ଯୋଉଘରେ ବଣିକେସନ ଶୋଇଥିଲା, ସେ ଘର କବାଟରେ ଲାଙ୍ଗୁଡ଼ ମାରିଦେଲା ଯେ, କବାଟ ଫିଟିଗଲା । ମା ବଣିକେସନର ମୁଣ୍ଡ ଉପରେ ବସିଲା, ଖୁଡ଼ୀମାନେ ଗୋଡ଼ ତଳେ ବସିଲେ, ପଚାରିଲେ କାହିଁକି ରୁଷିଚୁ କହ, ହଜିଥିଲେ ଖୋଜିଦେବୁଁ, ଭାଙ୍ଗିଥିଲେ ଗଢ଼ି ଦେବୁଁ, କାହିଁକି ରୁଷିଚୁ କହ । ପୁଅ କହିଲା, ମୋ ବାପ ଦାଦିମାନେ କାହାନ୍ତି କହ । ମା କହିଲା ତୁ ସେଥିରୁ କି ପାଇବୁ ? ବାପ ଦାଦି ତ ସାତ ଖୁଡ଼ୀଙ୍କ ଆଣିବାକୁ ଗଲେ, ସେଇଥିରେ ରହିଲେ । ପୁଣି ପୁଅ ଜିଦ କରିବାରୁ ମା ଯୋଗୀର

କଥାଯାକ ତାକୁ କହିଲା । ସବୁ କଥା ଶୁଣି ପୁଅ କହିଲା, ମୁଁ ଯିବି, ବାପ ଦେବରକାଙ୍କୁ ମୁକ୍ତ କରି ଆଣିବି । ସମସ୍ତେ ମନା କରୁଥାନ୍ତି, ବସ ଏକା ଯିବାକୁ ବାହାରିଲା । ଘୋଡ଼ାଶାଳକୁ ଯାଇ ଦେଖିଲା ଯେ, ଗୋଟିଏ ମଡ଼ିଆ ଘୋଡ଼ାଟିଏ ହସୁଛି, ତାକୁ ଆଣିଲା, ଖଣ୍ଡା ଆଣିଲା, ମା ଖୁଡ଼ୀ ସମସ୍ତଙ୍କୁ ଦଣ୍ଡବତ କରି ଯୋଗୀଗାଁକୁ ଗଲା, ସେ ମାଲୁଣୀଘରେ ପହଞ୍ଚିଲା । ମାଲୁଣୀ ଯାକୁ ସେଠାରେ ରହିବାକୁ ମନା କରୁଥାଏ; ଏ କହିଲା ତୁ ମୋ ଘୋଡ଼ାକୁ ନେଇ ଆଉ କୋଉଠି ବାନ୍ଧି ଅ, ମୁଁ ତୋ ଘରେ ମାଇପି ବେଶ ହୋଇ ରହୁଛି । ଯୋଗୀ ଯଦି ପଚାରିବ କହିବୁ ଏ ମୋର ଝିଅଟି, ମୁଁ ତ ବୁଢ଼ୀ ହେଲିଣି, ଯଦି ମରିଯିବି ନୂଆ ରାଣୀଙ୍କ ପାଇଁ ଫୁଲ କିଏ ଗୁନ୍ଥିବ ? ଏଯୋଗୁଁ ଯାକୁ ଆଣି ରଖିଛି । ବଶିକେଶନ ଗୁରୁଏ କଳା ବୋଳା ହେଲା, ଖଡ଼ୁ ଶାଢ଼ୀ ପିନ୍ଧି ଗୋଟିଏ ସ୍ତ୍ରୀରୂପ ଧରିଲା, ତା ଘରେ ରହିଲା । ଯୋଗୀ ଆସିଲା, ମାଲୁଣୀଠାରୁ ଫୁଲ ନେଇଗଲା, ବଶିକେଶନକୁ ମାଲୁଣୀର ଝିଅଟି ବୋଲି ବୁଝିଲା । ଏହିପରି ଥାଏ, ଦିନେ ବଶିକେଶନ ମାଲୁଣୀକୁ କହିଲା ମାଉସି ! ମୁଁ ଖଣ୍ଡିଏ ଫୁଲ ଗୁନ୍ଥନ୍ତି ? ମାଲୁଣୀ କହିଲା କାହିଁରେ ପୁଅ ଅସୁନ୍ଦର ହେଲେ ଯୋଗୀ ଆଉ ମତେ ରଖିବ ନାହିଁ । ଏ କହିଲା ସୁନ୍ଦର ହେଲେ ନେଇଯିବ, ଅସୁନ୍ଦର ହେଲେ ଫୋପାଡ଼ି ଦେଇଯିବ । ବଶିକେଶନ ଯୋଡ଼ି ଫୁଲ ଖଣ୍ଡି ଗୁନ୍ଥିଲା ସେ ବଡ଼ ସୁନ୍ଦର ହେଲା, ମାଲୁଣୀ ତାକୁ ନେଇ ଲୀଳାବତୀକୁ ଦେଲା । ବଶିକେଶନ ଯେ ଫୁଲମାଳରେ ଖଣ୍ଡିଏ କେତକୀପାଖୁଡ଼ାରେ ଭାଷା ଲେଖି ଗୁନ୍ଥିଥାଏ । ଲୀଳାବତୀ ଦେଖୁ ଦେଖୁ ସେ ଭାଷାଖଣ୍ଡିକ ଖସିପଡ଼ିଲା, ପଢ଼ି ଦେଖେ ଯେ, ତାର ପୁରୁଷ ବଶିକେଶନ ତାକୁ ନେବାକୁ ଆସିଛି । ଯୋଗୀର ଜୀବନ କୋଉଠି ଅଛି କଥାରେ ୨ ତାକୁ ପଚାରି କହିବାକୁ ଲେଖିଛି । ମନକଥା ମନରେ ଥାଏ, ଦିନେ ଲୀଳାବତୀ ଯୋଗୀ ସଙ୍ଗେ କଥାବାର୍ତ୍ତା କରୁ ୨ ପଚାରିଲା ହେ ! ତମେ ଯଦି

ମରିଯିବ, ମତେ କିଏ ପୋଷିବ ? ତେବେ ସିନା ମୋତେ ଅନାସ୍ତ କରି ଯିବ । ଯୋଗୀ କହିଲା ମୁଁ ଜାଣ ଯାଦୁକରେ ମନ୍ତ୍ର ? ଦରିଆ ଭିତରେ ସାତତାଳ ପାଣି, ସାତତାଳ ପଙ୍କ, ପଙ୍କ ଭିତର ନ ଗୋଟିଏ ଫଡୁଆ; ତା ଭିତରେ ଗୋଟିଏ ସାନ ଫଡୁଆ, ତା ଭିତରେ ବଗଟି ଅଛି, ତାକୁ ଯଦି କିଏ ଆଣି ଟେକ ମୋଡ଼ି ଦେବ ତେବେ ମୋ ପ୍ରାଣ ଯିବ । ଦରିଆ ଭିତରକୁ ଫେର କିଏ ଯିବ ? ମାଛ, ମଗର, କୁମ୍ଭୀର, ଖାଇଯିବେ । ଯଦି କିଏ ଏ ଗାଁପାଖ ଠାକୁରାଣୀଙ୍କ ଅନୁସରଣ କରି ତାଙ୍କ ହାତରେ ଯେ ବାଉହାତ ଖଣ୍ଡା ଅଛି, ତାକୁ ପାଇବ ତେବେ ସେ ଖଣ୍ଡା ହାତରେ ଥିଲେ ମାଛ, ମଗର, କଷ୍ଟ କରିବେ ନାହିଁ । ଲୀଳାବତୀ ଏସବୁ କଥା ବଣିକେସନ ପାଖକୁ ଲେଖି ପଠାଇଲା । ବଣିକେସନ ସେ ଠାକୁରାଣୀଙ୍କ ପାଖରେ ସାତ ରାତି ସାତ ଦିନ ଗୁହାରିଥି ପଡ଼ିଲା । ଠାକୁରାଣୀ ପ୍ରସନ୍ନ ହୋଇ ତାକୁ ଆପଣା ହାତରୁ ଖଣ୍ଡା ଦେଲେ; କହିଲେ ଏ ଖଣ୍ଡା ସବୁବେଳେ ହାତରେ ରଖିଥିବୁ, ଦରିଆରେ ବୁଡ଼ିଲାବେଳେ ଯଦି ମାଛ, କୁମ୍ଭୀର, ମଗର ଆସିବେ, ତେବେ ଲିଅ ଭଜା ନେଇଥିବୁ ଯେ, ଲିଅ ବୁଣିଦେଲେ ସେମାନେ ତାକୁ ଖାଇଲାଗିବେ, ପାଖକୁ ଆସିବେ ନାହିଁ । ଠାକୁରାଣୀଙ୍କଠାରୁ ଏହିପରି ଆଜ୍ଞା ପାଇ ବଣିକେସନ ମାଲୁଣୀ ପାଖକୁ ଗଲା, ତାକୁ ଏସବୁ କଥା କହି ଅଣ୍ଟିରେ ଲିଅଗୁଡ଼ିଏ ନେଇ ଦରିଆ କୂଳକୁ ଗଲା । ଦରିଆ ମଝିରେ ପଶି ଫଡୁଆଟି ଆଣିଲା, ଠାକୁରାଣୀଙ୍କ ଖଣ୍ଡା ଥାଏ ହାତରେ, କେହି ଜୀବଜନ୍ତୁ କଷ୍ଟ କଲେ ନାହିଁ । ଫଡୁଆଟି ଆଣି ସେ ମାଲୁଣୀ ଘରକୁ ଫେରି ଆସିଲା, ତା ଘୋଡ଼ା ଉପରେ ଚଢ଼ି ଯୋଗୀ ଦୁଆରକୁ ଗଲା । ଦରିଆ ଭିତରୁ ଫଡୁଆଟି ଆଣିଲାବେଳୁଁ ଯୋଗୀର ଜ୍ୱର ହୋଇଥାଏ, ଯୋଗୀକି ଦାଣ୍ଡକୁ ଡାକିଲା, ତାକୁ ସେ ଫଡୁଆଟି ଦେଖାଇଲା ଯୋଗୀ ସେତେ ନେହୁରା ନମସ୍ତ ହୋଇ ସେ ଫଡୁଆଟି ମାଗିଲା, ତା ଶୁଣୁଚି କିଏ ? ବଣିକେସନ କହିଲା ଆଗେ ମୋ ବା

ଆଉ ଛ ଭାଇଙ୍କୁ ଦେ, ସେମାନଙ୍କ ଘୋଡ଼ା ଦେ । ଯୋଗୀ ସେମାନଙ୍କୁ ନିଜରୂପ ଦେଲା । ମାଲୁଣୀଘର ବଣ, ଧୋବା ଘର ବଣ ଆଉ ସେ ଗାଁ ର ଯେତେଲୋକଙ୍କୁ ଯୋଗୀ ଗଛ ବୃକ୍ଷ କରି ବନ୍ଦ କରିଥିଲା, ସେମାନଙ୍କୁ ସମସ୍ତଙ୍କୁ ମନଷ କଲା । ଯୋଗୀ ବଣିକେସନଠାରୁ ପଢ଼ୁଅଟି ନେବ ବୋଲି ବଡ଼ ଚେଷ୍ଟା ହେଉଥାଏ । ବଣିକେସନ କହିଲା ଭୁ ଏଠାରେ ନିଆଁ କର ମୁଁ ଦେବ । ଯୋଗୀ ନିଆଁ ଥରକଏ ଲଗାଇଲା ବଣିକେସନ ପଢ଼ୁଅଟି ପିଟାଇ ତା ଭିତରୁ ବଗଟିକୁ ବାହାର କରି ସମସ୍ତଙ୍କ ଆଗରେ ବେକ ମୋଡ଼ ଦେଇ ନିଆଁରେ ପକାଇଦେଲା । ଯୋଗୀ ମୁଠାଣିଏ କଇକାଡ଼ି ସେଇକ୍ଷଣ ମରିଗଲା । ବଣିକେସନ ବାପ ଭାଇ ସାତଭାଇ ଆଉ ଲୀଳାବତୀକୁ ନେଇ ଘରକୁ ଆସିଲା । ଆନନ୍ଦରେ ଘର ଦୁଆର କଲା, ମୁଁ ଗଲିକୁ କଥା କହିଲି ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।





## ଅଁଳାକଣ୍ଠେଇ କଥା ।

ଦୋଟି ମୂଳିଆ ମୂଳିଆଣୀ ଥାନ୍ତି, ମୂଳିଆଟି ରଜାଘରୁ ମୂଲ ଲାଗି ଧାନ ଗଉଣୀଏ ଅଣେ, ତାକୁ ନିତି ଖାଇ ଦିନ କଟାନ୍ତି । ଦିନକର ଅଁଳାକଣ୍ଠେଇ ବିକା ଆସିଥିଲା, ଗାଁ ଭିତରେ ସମସ୍ତେ କିଣିଲେ, ମୂଳିଆଣୀଟି ବି ଦିନକର ମୂଲଧାନ ଗୌଣୀକ ଦେଇ ଗୋଟିଏ କିଣିଲା । ଠେକା ପୁନା ସାଙ୍ଗରେ ଧାନ ଗଉଣୀକ କୋଉଠି ସରି (୧) ? ଏଣୁ କରି ମୂଳିଆଣୀଟି ଯୋଉ କଣ୍ଠେଇଟି କିଣିଥିଲା ତା ସବୁଠାରୁ ଅସୁନ୍ଦର ଦିଶୁଥିଲା । କଣ୍ଠେଇଟିକି ଅଣି ମୂଳିଅଣୀ ତା କୁଡ଼ିଆଘରର

(୧) ସମାନ ।

ଗୋଟିଏ ଠଣାରେ ରଖିଦେଉଥାଏ । ତାର ଘେରସ୍ତ କାମ ସାରି ଘରକୁ ଆସି ଦେଖିଲା ଯେ, ଖାଇବା ପିଇବାକୁ କିଛି ନାହିଁ, ମୂଳ ଧାନରେ ଅଁଳାକଣ୍ଢେଇଟିଏ କଣା ହୋଇଛି । ଭୋକରେ ପେଟ ଜଳୁଛି, ଭାରିଯାକୁ ନସୁକ ମାଡ଼ ଚଢ଼ାଇଲା, ଉପାସ ଭୋକରେ ଫେର କାମକୁ ଗଲା, କାମରୁ ଆସି ଯାହା ମିଳିଲା ଖାଇ ଘେରସ୍ତ ଭାରିଯା ଦୁହେଁ ଘରେ ଶୋଇଲେ । ରାତି ପହରେ ହୋଇଛି ଅଁଳାକଣ୍ଢେଇ ଡାକ ପକାଇଲା, 'ଲୋ କହୁଣୀଖାଇ, ମୁଁ ହଗିଯିବି ଉଠୁ ।' ମୂଳଆଣୀ ଉଠୁ ନ ଥାଏ, ଅଁଳାକଣ୍ଢେଇ ଡାକ ଉପରେ ଡାକ ପକାଇବାରୁ, ବିରକ୍ତି ଉଠିଲା, କହିଲା ତୁ ପଛକେ ଏ ଘର କଣରେ ହଗ, ଆଉ ପାଟି କର ନା, କାଲେ ତା ଘେରସ୍ତ ନିଦ ଭାଙ୍ଗିଯିବ, ଏହି ଭୟରେ ଏପରି କହିଲା । ଅଁଳାକଣ୍ଢେଇ ଯେ ଘର କଣରେ ହଗିଲା । ଫେରି ଶୋଇଗଲା, ରାତି ଦୁଇପହର ହେଲାଣି, ଅଁଳାକଣ୍ଢେଇ ଉଠିଲା, ଫେରି ସେହିପରି ଡାକ ପକାଇଲା । ମୂଳଆଣୀ କହିବା ଅନୁସାରେ ଘର କଣରେ ହଗିଲା । ରାତି ଶେଷ ପହରେ ଯେତେବେଳେ ଅଁଳାକଣ୍ଢେଇ ଉଠି ପୁଣି ସେହିପରି ଡାକିଲା, ମୂଳଆଣୀ ବିରକ୍ତ ଭାରି ବିରକ୍ତ ହୋଇ କହିଲା ମୋ କାନରେ ହଗ । ସତକୁ ସତ କଣ୍ଢେଇମଣି ଆସି ତ କାନରେ ହଗିଦେଇ ଗଲା । ଏହିପରି ରାତି ପାହିଲା, ସକାଳୁ ଉଠି ମୂଳଆଣୀ ଦେଖେ ଯେ ତା କାନରେ ଘୁଅଫୁଅ କିଛି ନାହିଁ, ସୁନା ଗୁଣ୍ଡାଏ ! ଘର କଣକୁ ଅନାଇ ଦେଖେ ଯେ କେତେ ସୁନା ଜମା ହୋଇଛି । ଆନନ୍ଦର ଆଉ ସୀମା ରହିଲା ନାହିଁ । ସ୍ୱାମୀକି ଡାକିଆଣି ସବୁ ଦେଖାଇଲା । ଯାହା ଖରଚ କରିବାର କଲେ, ବାକି ମାଠିଆରେ ପୂରାଇ ଭିତ ତଳେ ପୋତିରଖିଲେ । ଏହିପରି ସବୁଦିନେ କରନ୍ତି, ଯେ ମୂଳଆଣୀର ସେ ଗାଁରେ ଗୋଟିଏ ସଙ୍ଗାତ ଥିଲା, ସଙ୍ଗାତ ଦିନେ ତା ଘରକୁ ଆସିଲା, ଦେଖିଲା ସ୍ତ୍ରୀଙ୍କ ଘରେ ସମ୍ପତ୍ତି ମାଡ଼ିଯାଉଛି ପଚାରିଲା, ଏତେ ସମ୍ପତ୍ତି କୁଆଡୁ ହେଲା ? ବୁଝିଲା ଯେ ସେଦିନ ସଙ୍ଗାତ ଯେ ଅଁଳାକଣ୍ଢେଇ କିଣିଥିଲା

ତାକୁ ସମସ୍ତେ ଅସୁନ୍ଦର ବୋଲି କହୁଥିଲେ, ସେ ସୁନା ହସ୍ତେ । ହ ପଙ୍ଗାଇଙ୍କର ଘର ମନ ମିଳେ, ହ ହନପାଇଁ ନେଇ ସଂ:ାଭଗାର୍ ଅଁଳାକଣ୍ଢେଇକୁ ମାଗିନେଲା । କଣ୍ଢେଇକୁ ନେଇ ଘରକୁ ଯାଉଛି, ବାଟରେ ଗୋଟାଏ ବାଇଗଣ କିଆରି ପଡ଼ିଲା । ଅତ୍ତୁ ସୁନ୍ଦର କଅଁଳିଆ ବାଇଗଣଟିଏ ଦେଖି ତାକୁ ତୁଣ୍ଡାଇ ନେଇ ଖାଇଲା । ଘରେ ପହଞ୍ଚି ଅଁଳାକଣ୍ଢେଇକୁ ଉତ୍ତମ ସ୍ଥାନରେ ରଖିଦେଲା । ମନ ଖାଲି ଛଟପଟ ହେଉଥାଏ କେମନ୍ତ ରାତି ହେବ । ରାତି ହେଲା; ଝିଟେ? ରନ୍ଧାବଢ଼ା କରି ଖାଇପିଇ ଶୋଇଲେ । ରାତି ପହରକଠେଇଁ ଅଁଳାକଣ୍ଢେଇ 'ବାଇଗଣଚୋରଣୀ' ବୋଲି ହକର ପକାଇଲା । ଏ ସ୍ତ୍ରୀଲୋକଟିର ଗେରସ୍ତ ଉଠିବସି କାବା ହୋଇ କହିଲା, କାହିଁ ଗୋଟାଏ କଣ ଅଛି, ବାଇଗଣଚୋରଣୀ ବୋଲି ଡକାପାଡ଼ୁଛି, ଏ ରଜା ଦେଶ, ରଜା ଶୁଣିଲେ ଏହିକ୍ଷଣି ମୋ ହୁରୁମତ ନେବେ, ଏହା କହି ବା ଭାରିଯାକୁ ଛାଟିଙ୍କ ଛେଚିଲା । ଅଁଳାକଣ୍ଢେଇ ଗ୍ରାଣ୍ଡବାର ଜନ୍ମ ନହେଁ, ଡାକୁଥାଏ 'ଲୋ ବାଇଗଣ ଚୋରଣୀ ମୁଁ ହଗିଯିବି ଉଠୁ । ଏ ସ୍ତ୍ରୀଲୋକଟି ଉଠି ତାକୁ ଘରର ଏକ କଣରେ ହଗାଇଲା । ରାତି ଦ୍ୱିତୀୟ, ତୃତୀୟ ପହର ବି ସେହିପରି ଘରର ଆଉ ଦୁଇକଣରେ ହଗାଇଲା, ଶେଷ ପହରକୁ ଆପଣା ଲୁଗା କାନିରେ ହଗାଇଲା । ସକାଳୁ ଉଠି ଗେରସ୍ତକୁ ସବୁ ଦେଖାଇଲା । ସୁନାମୁଣ୍ଡା ଦେଖି ଗେରସ୍ତର ଆଖି ଝଲକି ପଡ଼ିଲା । ଭାରିଯାକୁ କେତେ ଗେଲ କରି କଥା କହିଲା; କାଲି ରାତିରେ ମାଡ଼ ଖାଇଥିବାରୁ ପିଠି ଆଉଁଷି ଦେଲା । ଅଁଳାକଣ୍ଢେଇକୁ ହି ହନ ରଖି, ଏମାନେ ସେ ମୂଲ୍ୟଥଣୀକୁ ଫେରାଇଦେଇ ଆସିଲେ । ସେ ଅଁଳାକଣ୍ଢେଇକୁ ନେଇ ଘରଦୁଆର କଲା, ପକ୍କାକୋଠା କଲା, ଖୁବ ସୁଖରେ ରହିଲା, ମୁଁ ଗଲିକୁ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

# ରୁକ୍ମିଣୀ ମାଧବଙ୍କ ଅର କଥା ।

ଗୋଟିଏ ସାଧବଝିଅ ଧୂଳିଘର କରି ଖେଳୁଚି, କଡ଼ାଏ କଉଡ଼ି ପାଇଲା । କଉଡ଼ି କଉଡ଼ିକ ହାତରେ ଧରି ଡିଆଉଁଥାଏ କହୁଥାଏ, 'କଡ଼ାକେ ମରି' କଡ଼ାକେ ତରି, କଡ଼ାକେ ଘରଦୁଆର କରି, କଉଡ଼ି କଉଡ଼ିକ ବେଉନ୍ତ ପରିଚଲ ସୁନାଖମ୍ବେ ସୁନ କଳଶ ଉପରି, ରଜାପୁଅ ସେହିବାଟେ ଘୋଡ଼ାଦଉଡ଼ କରୁଥିଲା, ସାଧବଝିଅର କଥା ଶୁଣି ତାକୁ ପଚାରିଲା, କଉଡ଼ି କଡ଼ାକେ କିପରି ଏ କଥ ସବୁ କରିବୁ ? ଏ କହିଲା ବୁଦ୍ଧି ଥିଲେ ସବୁ ହୋଇପାରେ । ରଜାପୁଅ ଏହା ଶୁଣି କିଛି ନ କହି, ଘୋଡ଼ାଦଉଡ଼ ବନ୍ଦ କରି ଘରକୁ ଗଲା, ଗୋଟିଏ ଘର ତହିଁରେ ମୂଷାମାଟି କଣ୍ଢେ ବିଲେଇ ଗୁହ ଖଣ୍ଡେ ସେଇଘରେ ଯାଇ ଶୋଇଲା । ଖାଇଲା ପଇଲାବେଳକୁ ପୁଅକୁ ଖୋଜାଗଲା, ରାଣୀ କହିଲେ ଆଜି କାହିଁକି ଏତେବେଳଯାଏ ପୁଅ ଅସି ନାହିଁ ? ସମସ୍ତେ ଗଲେ ଖୋଜିବାକୁ, ଅନ୍ଧାରୁ ସନ୍ଧା ଖୋଜିଲେ, କୋଉଠି ପାଇଲେ ନାହିଁ । ବିଲେଇ କହିଲା 'ମେଉଁ ମଉଁ ଦୁଧଭାତ କରି ଗୁଣ୍ଡିଏ ଖାଉ ପୁଅକୁ ଦେଖାଇଦେଉଁ ।' ରାଣୀ କହିଲେ ମର୍ ନିଅଁ ଲଗିଠା, ସବୁ ଦିନେ ଖାଉଚୁ ଆଜି କଣ ନ ଖାଇଲେ ପୁଅକୁ ଦେଖାଇବୁ ନାହିଁ । ବିଲେଇ କହିଲା ସବୁଦିନେ ଖାଏଁ ଅଇଣ୍ଠାଭାତ, ଆଜି ଖାଇବି ହାଣ୍ଡିରୁ ଭାତ । ବିଲେଇକି ହାଣ୍ଡିରୁ ଭାତଗୁଣ୍ଡାଏ ବାଢ଼ିଆଣି ଦୁଧ ଗୋଳେଇ ଖାଇବାକୁ ଦେଲେ । ବିଲେଇ ଖାଇଲା, ଲାଙ୍ଗୁଡ଼କୁ ଛିଡ଼ାକରି ମଉଁ ହୋଇ ଅଗେଇ ବାହାରିଲା । ଯୋଉଘରେ ରଜାପୁଅ ଶୋଇଚି, ସେ

ଘର କବାଟରେ ଲଙ୍ଗୁଡ଼ ମାରଦେଲା ଯେ, କବାଟ ଫିଟିଗଲା । ରଜା ରାଣୀ ସେ ଘର ଭିତରେ ପଶିଗଲେ, ମା ଗୋଡ଼ତଳେ ବସିଲା, ବାପ ମୁଣ୍ଡଉପରେ ବସିଲା, କହିଲେ ହଜିଥିଲେ ଖୋଜିଦେବୁଁ, ଭାଙ୍ଗିଥିଲେ ଗଢ଼ିଦେବୁଁ, କାହିଁକି ରୁଷିଚୁ କହ । ରଜାପୁଅ କଥା କହୁ ନ ଥାଏ । ମା ବାପ ଲଗେଇ ୨ କେତେବେଳ ପରେ କଥା କହିଲା । କହିଲା ତେମେ ଦୁହେଁ ସତ୍ୟ କର, କହିବି କାହିଁକି ରୁଷିଚି । ମା କହିଲା ମୋର ପୁଅର କି ସତ୍ୟ ? ବାପ କହିଲା ବାପର ପୁଅର କି ସତ୍ୟ ? ପୁଅ ଏକଜିଦ୍ ଲଗାଇଲା ଯୋଉଠୁ, ମା ବାପ ସତ୍ୟ କଲେ । ପୁଅ କହିଲା ମୁଁ ସାଧବ ଝିଅକୁ ବିଭା ହେବି । ମା ବାପ କହିଲେ ଆମ ସମାନ ବନ୍ଧୁ ହେବ, ତୋ ସମାନ କନ୍ୟା ହେବ, ତେବେ ଯାଇ ବିଭାଘର, ଏ କଥା ଛାଡ଼ି ଆଉ କଣ କହ । ପୁଅ କହିଲା ମୋର ଆଉ କିଛି କଥା ନାହିଁ, ମୁଁ ସାଧବ-ଝିଅକୁ ବିଭା ନ ହେଲେ ପ୍ରାଣ ହରାଇଦେବି । ରଜା ନାଚାର ହୋଇ ହଁ ଭରିଲେ । ବନ୍ଧୁମାନଙ୍କ ଘରକୁ ନିମନ୍ତ୍ରଣ ଗଲା, ଛାମୁଣ୍ଡିଆ ବନ୍ଧା ହେଲା, ବେଦୀ ତୋଳା ହେଲା; ମହାସମାରୋହରେ ବିଭାଘର ହେଲା ।

ରଜାପୁଅ ଚଉଠି ଦିନ ରାତିରେ ସାଧବଝିଅ ପାଟଭେଣିଆ କାନରେ କଉଡ଼ି କଡ଼ାଏ ବାନ୍ଧିଦେଇ ତାର ଧାଈ ସାଙ୍ଗରେ ତାକୁ ଏକ ଦଣ-ସ୍ତରେ ସୁଆଉରେ ନେଇ ଛାଡ଼ି ଆସିଲା । ସାଧବଝିଅକୁ ନିଦ ଲାଗିଥାଏ କିଛି ଜାଣିପାରିଲା ନାହିଁ । ନିଦ ଭାଙ୍ଗିଗଲାରୁ ଦେଖେ ଯେ କେଉଁ ନାହାନ୍ତ ଅଗନାଗନ ବନସ୍ତ ଭିତରେ ସେ ଏକା, ଆଉ ତା ଧାଈ ଅଛନ୍ତି, କଉଡ଼ି କଡ଼ାଏ କାନରେ ବନ୍ଧା ହୋଇଚି । ତାର ଦୁଃଖକଥା ପ୍ରଭୁ ମନେ ଚଢ଼ିଲା, ଧାଈକି କିଛି କହିଲା ନାହିଁ, ସେ ବନସ୍ତରେ ଖଣ୍ଡିଏ କୁଡ଼ିଆ କରି ରହିଲା । କାନରେ ଯେଉଁ କଉଡ଼ି କଡ଼ାକ ଥିଲା ତାକୁ ଧାଈକି ଦେଲା ଲିଆ କିଣି ଆଣିବାକୁ । ଧାଈ ଲିଆ ଆଣିଲାରୁ ତାକୁ କହିଲା ନେ ଯାକୁ କଣ ଭିତରେ ଦୋଠିଏ ପଦା ଯୋଗାରେ ବୁଣିଦେ, ମଞ୍ଜୁର ଖାଇକରି ପକ୍ଷୀ ଝାଡ଼ିଦେଇ ଯିବେ । ଉଚ୍ଛୁଁ ଅରଦିନ ପଦିଗୁଡ଼ିକ

ଗୋଟେଇ ଅଣିଲେ, ସାଧବପୁଅ ସେ ତମ୍ପୀରେ ପଙ୍ଖା ବୁଣି ଧାଙ୍ଗଡ଼କୁ ହାକିବାକୁ ଦେଲା, ଧାଙ୍ଗଡ଼ ବହୁତ ଟଙ୍କା ଆଣିଲା । ଏହିପରି ସବୁଦ୍ରବ୍ୟ ଟେକ କରି କରି ସେ କୁଡ଼ିଆରେ କୁଡ଼ିଏ ଟଙ୍କା ହେଲା । ସାଧବପୁଅ କହିଲା, ଧାଙ୍ଗଡ଼ ବେଠିଆ ଡାକି ଆଣ, ଏ ଲଟା କାଟିବେ । ଧାଙ୍ଗଡ଼ ବେଠିଆ ଡାକି ଆଣିଲା ସେ ସବୁ ଲଟା କାଟିଲେ । କୋଠା ତୋଳିଲେ, ପୋଖରୀ ଖୋଳିଲେ, କୂଅ ବନ୍ଧାଇଲେ । ସାଧବପୁଅ ହେଉଡ଼ୁ ବଣିଆ ଡକାଇ ଅଳଙ୍କାର ଗଢ଼ାଇଲା; ରୂପାବାସନ ପାଟେର କଲା, ସୁନାବାସନ ପାଟେର କଲା, ରୂପାଖାପ, ସୁନାଖାପ, ରୂପା ପିଲସଜ, ସୁନା ପିଲସଜ କଲା । ସବୁ କରିସାରି ଧାଙ୍ଗଡ଼କୁ କହିଲା, ଯା କେଉଁସାହିରୁ କନ୍ୟା ଆଉ କେଳୁଣୀ ସଜ ଆଣିବୁ । ଧାଙ୍ଗଡ଼ କେଳୁଣୀ ସଜ ଆଣିଲା, ସାଧବପୁଅ କେଳୁଣୀସଜ ସବୁ ପିନ୍ଧିଲା, ଗୋଟିଏ ଚକଆ ହାର ବେକରେ ଲଗାଇଲା, ତା ସ୍ୱାମୀଘର ଯୋଉଠି ଗଲା ସେଇଠିକି ଭିକମାଗିବାକୁ । ସମସ୍ତେ ଭିକ ଦେଲେ; କହିଲେ କେଡ଼େ ସୁନ୍ଦର କେଳୁଣୀଟିଏ ଆସିଛି । ସେ ରଜାପୁଅ ଆଉ ଗୋଟାଏ ବିଭାହୋଇଥାଏ ସେ କହିଲା ମୁଁ ଟିକିଏ କେଳୁଣୀକି ଦେଖନ୍ତି ? ନଅରଭିତରୁ ଜଳାକାଠେ କେଳୁଣୀକି ଦେଖିଲା । କେଳୁଣୀ ବେକରେ ଯୋଉ ଚକଆ ହାରଟି ଥିଲା ତାକୁ ଦେଖି ନୂଆରାଣୀଙ୍କର ବଡ଼ ଲୋଭ ହେଲା; ରଜାପୁଅକୁ କହିଲା ମତେ ସେ ହାରଟିକି ଆଣିଦିଅ । ରଜା କେଳୁଣୀକି ସେ ହାରଟିକି କିଣିବାକୁ ମାଗିଲାରୁ ସେ ନାହିଁକଲା, ନୂଆରାଣୀ ଏକ ଜିଦ୍ ଲଗାଇଲେ ଯୋଉଠୁ, ରଜାପୁଅ କେଳୁଣୀକି କହିଲା, ମତେ ସେ ହାର ପନ୍ଦରଦିନପାଇଁ ଦେଇଥା, ମୁଁ ପଛେ ଫେରାଇଦେବି, କେଳୁଣୀ ନାହିଁ ନାହିଁ କରୁଥିଲା, ରଜାପୁଅ ଯାଉଁ ଭାରି ଜିଗର ଲଗାଇଲା ସାଧବପୁଅ କହିଲା, ହଉ ଭଲଲୋକ ଡାକ, ମୁଁ ଭଲଲୋକଙ୍କ ଆଗରେ ତମକୁ ହାର ଦେବି । ଭଲଲୋକ ଆସିଲେ, ସାଧବପୁଅ କହିଲା, ତେମେମାନେ ସାକ୍ଷୀ ଥାଅ, ଏ ହାର ନଉଛନ୍ତି, ପନ୍ଦର ଦିନରେ

ଫେରାଇଦେବେ, ନ ଦେଲେ ସ୍ତ୍ରୀଙ୍କୁ ମୁଁ ସାଙ୍ଗରେ ନେଇଯିବି । ସମସ୍ତେ ସାକ୍ଷୀ ରହିଲେ, ସାଧବଝିଅ ହାର ଦେଇଗଲା । ସାଧବଝିଅ ଗୋଟିଏ ମୂଷା ପୋଷିଥାଏ, ମୂଷାକୁ କହିଲା ହଇରେ ମୂଷା ତୁ ସାହାଳ ଲୁଣ ଖାଉ ତାର ଗୁଣ କରୁଛି ? ମୂଷା କହିଲା ତାହାର ଗୁଣ କରିବି ନାହିଁ, ଆଉ କାହାର କରିବି ? ସାଧବଝିଅ ମୂଷାକୁ କହିଲା ତୁଏ ଦେଶ ରଜାଘରକୁ ଯିବୁ, ରଜାପୁଅ ଭାରିଯା ଶୋଇଥିବ ତା ବେକରେ ଯୋଉ ଚନ୍ଦ୍ରହାର ଅଛି ତାକୁ କାଟି ଘେନି ଆସିବୁ । ମୂଷା ଗଲା ନୂଆ ରାଣୀଙ୍କ ବେକରୁ ହାରଟି କାଟି ଘେନିଆସିଲା, ସାଧବଝିଅକୁ ଦେଲା, ସାଧବଝିଅ ହାରକୁ ରଖିଲା; ପନ୍ଦରଦିନ ଛାଡ଼ି ରଜାପୁଅ ପାଖକୁ ଗଲା; କହିଲା ମୋ ହାର ଦିଅ । ରଜାପୁଅ ଗଲା, ଭାରିଯାକୁ ହାର ମାଗିଲା, ରାଣୀ ବେକ ଦେଖିଲାବେଳକୁ ହାର ନାହିଁ । ରାଣୀ କାନ୍ଦି ହୋଇ ବସିଲା, ରଜାପୁଅକୁ କହିଲା, ମୋ ହାରକୁ କିଏ ନେଇଗଲାଣି । ରଜାପୁଅ ବଡ଼ ହଇରାଣରେ ପଡ଼ିଲା, ଭୂନି ହୋଇ ଘରେ ଲୁଚି ରହିଲା । କେଲୁଣୀ ଡାକିକି ଥକିଲା, ରଜାପୁଅ ଆଉ ଶୁଣୁ ନଥାଏ । କେଲୁଣୀ ଭଲଲୋକମାନଙ୍କୁ ଡାକିଆଣିଲା, ଭଲଲୋକେ ସବୁ ରଜାପୁଅକୁ ଘରୁ ଡାକି ଆଣିଲେ । ସାଧବଝିଅ କହିଲା ମୋ ହାର ଦିଅନ୍ତୁ, ନହେଲେ ମୋ ସାଙ୍ଗରେ ଚାଲନ୍ତୁ । ରଜାପୁଅ ହାରର ଦାମ୍ ଯାଚିଲା, କେଲୁଣୀ କେବେ ମାନିଲା ନାହିଁ, ଏକଜିଦ୍ ଲଗାଇଥାଏ ହାର ନ ଦେଲେ ମୋ ସାଙ୍ଗରେ ଚାଲ । ଭଲ ଲୋକ କହିଲେ, କହିଚନ୍ତି ଯେତେବେଳେ ଯିବେ ନାହିଁ କଣ । ସାଧବଝିଅ ରଜାପୁଅକୁ ସାଙ୍ଗରେ ନେଇ ଚାଲିଗଲା, ତା ଘରେ ରଖାଇଲା । କେଲୁଣୀ ବେଶ ଛାଡ଼ି ଭଲ ଲୁଗା ପିନ୍ଧିଲା । ପୂଜାହାରିକି କହିଲା ଆଜି ଭଲ କରି ରନ୍ଧାବଢ଼ା କର । ପୂଜାହାରୀ ରୋଷେଇବାସ କଲା । ସାଧବଝିଅ ଯୋଉଘରେ ବସଉଠା କରେ ସେହିଘରେ ଯୋଗାଡ଼ହେଲା । ରଜାପୁଅକୁ ଡାକି ଆଣିଲେ ଖାଇବାକୁ । ଭାତ ତରକାରୀ ସବୁ ସୁନାବାସନ ରୂପାବାସନରେ ବଢ଼ା

ହୋଉଥାଏ । ରଜାପୁଅ ଖାଇବସି ଦରଖିଆ ହେଲାଣି ସାଧବଝିଅ କହିଲା,‘କହ୍ନା'ବେ ମର କହ୍ନାବେ ବଳ କହ୍ନାବେ ନାଗ ଦୁଆର ବନ୍ଦ; କହ୍ନାଏ କହୁଛ ହେଉନ୍ତୁ ଯାଉଛନ୍ତି ନୂଆବୋହୂମାନେ ବନ୍ଦୀ ବା ଗଲେ ।” ରଜାପୁଅ ସବୁ ବୁଝିପାରିଲା, ଖାଇଲାଠାଁରୁ ଉଠିଯାଇ ସାଧବଝିଅ ହାତକୁ ଧରିପକାଇଲା, କହିଲା ତମେ ସେହି । ମୋ ଦୋଷ କ୍ଷମା କର । ଏହାକହି ସାଧବଝିଅକୁ ଘରକୁ ନେଇଗଲା, ତାକୁ ପାଟରାଣୀ କଲା, ସେ ଭରସାକୁ ଘେନି ସୁଖରେ ରହିଲା; ମୁଁ ଗଲାକୁ କଥା ନ କହିଲା । ମୋ କଥାଟି ସରିଲା, ଫୁଲଗଛଟି ମରିଲା ।

ହଇରେ ଫୁଲଗଛ କାହିଁକି ମରିଲୁ ? ମତେ ଗାଈ ଖାଇଗଲା ।
ହଇରେ ଗାଈ କାହିଁକି ଖାଇଲୁ ? ମତେ ଗୋରୁଆ ଜଗିଲା ନାହିଁ ।
ହଇରେ ଗୋରୁଆ କାହିଁକି ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲାନାହିଁ ।
ହଇଲୋ ବଡ଼ବୋହୂ କାହିଁକି ଭାତ ଦେଲୁ ନାହିଁ ? ମତେ ପୁଅ ଛାଡ଼ିଲା ନାହିଁ ।
ହଇରେ ପୁଅ କାହିଁକି ଛାଡ଼ିଲୁ ନାହିଁ ? ମତେ ଧୂଳିଅଜଗର କାମୁଡ଼ିଲା ।
ହଇରେ ଧୂଳିଅଜଗର କାହିଁକି କାମୁଡ଼ିଲୁ ? ମୁଁ ତଳେ ଥାଏଁ କଅଁଳ ମାଉଁସ ପାଇଲେ ଚୁଟ୍ କରି ଖାଏଁ ।

---

ସମ୍ପୂର୍ଣ୍ଣ ।

---

କଟକ ଦତ୍ତପ୍ରେସରେ ଶ୍ରୀହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍ୟନ୍ତ୍ରେ ମୁଦ୍ରିତ ।